# ହଂସଦୂତ ।

ଶ୍ରୀ ରୂପଗୋସ୍ୱାମିଙ୍କ ବିରଚିତ ।

ଅଧୁନା

ଯଶୋଧର ଦୋଳ

ଶ୍ରୀ ଅଭୟଚନ୍ଦ୍ରଦାସଙ୍କ ଦ୍ୱାରା

ଅରୁଣୋଦୟ ଯନ୍ତ୍ରାଳୟର ମେନେଜରଙ୍କ

ଏସ୍ତବାର

ପ୍ରକାଶିତ ।





CUTTACK
PRINTED BY N N SAHOO
AT THE ARUNODOY PRESS
1909

ମୂଲ୍ୟ ୫ ୦ ୵ [illegible] ।

# ହଂସଦୂତ ।

ଦୁକୂଳଂ ବିଭ୍ରାଣୋ ଦଳିତହରିତାଳଦ୍ୟୁତିହରଂ
ଜବାପୁଷ୍ପଶ୍ରେଣୀ-ରୁଚିରରୁଚିର ପାଦାମ୍ବୁଜତଳଃ ।
ତମାଳଶ୍ୟାମାଙ୍ଗୋ ଦରହସିତଲୀଳାଞ୍ଚିତମୁଖଃ
ପରାନନ୍ଦାଭୋଗଃ ସ୍ଫୁରତୁ ହୃଦି ମେ କୋଽପି ପୁରୁଷଃ ।୧।

### ସ୍ୱୀୟ ବଙ୍ଗଳାର୍ଥୀ ।

ସୁଦଳିତ ହରିତାଳଦ୍ୟୁତିହର କଟିରେ ବସନ ଯାର ।
ଜବାପୁଷ୍ପଶ୍ରେଣୀ ରୁଚିରରୁଚିର ଯେ ପାଦତଳ ମନୋହର ।
ତମାଳସଦୃଶ ଶ୍ୟାମ ଅଙ୍ଗ ଦରହାସ ଶୋଭିତ ଅଧର ।
ପରମ ଆନନ୍ଦ ଧାମ ଯେ ଅଛନ୍ତି ହୃଦେ ସ୍ଫୁରନ୍ତୁ ସେ ମୋର ।୧।

ଯଦା ଯାତୋ ଗୋପୀହୃଦୟମଦନୋ ନନ୍ଦସଦନା-
ନ୍ମୁକୁନ୍ଦୋ ଗାନ୍ଧିନ୍ୟାସ୍ତନୟମନୁରୁନ୍ଧନ୍ମଧୁପୁରୀଂ ।
ତଦାମାଙ୍କ୍ଷୀଚ୍ଚିନ୍ତାସରିତି ଘନଘୂର୍ଣ୍ଣାପରିଚିତୈ-
ରଗାଧାୟାଂ ବାଧାମୟପୟସି ରାଧା ବିରହିଣୀ ।୨।

ଗୋପୀଙ୍କ ହୃଦୟ-ମଦନ ମୁକୁନ୍ଦ ଅକ୍ରୂରସଙ୍ଗକୁ ଯାଇ ।
ନନ୍ଦସଦନରୁ ମଧୁଭୁବନକୁ ଯେବେ ଗଲେ ଦୂର ହୋଇ ।
ସେକାଳେ ବଡ଼ବଡ଼ତରଙ୍ଗ ଅଗାଧ ବାଧା-ଜଳ ପୂର୍ଣ୍ଣ ଯହିଁ ।
ସେହି ଚିନ୍ତା ସରିତରେ ବୁଡ଼ିଗଲେ ରାଧା ବିରହିଣୀ ହୋଇ ।୨।

କଦାଚିତ୍ ଖେଦାଗ୍ନିଂ ବିଘଟୟିତୁମନ୍ତର୍ଗତମସୌ
ସହାଳୀଭିର୍ଲେଭେ ତରଳିତମନା ଯାମୁନତଟୀଂ ।
ଚିରାଦସ୍ୟାଶ୍ଚିତ୍ତଂ ପରିଚିତକୁଟୀରାବକଳନା-
ଦବସ୍ଥାଂ ତସ୍ତାରସ୍ଫୁଟମଥ ସୁଷୁପ୍ତେଃ ପ୍ରିୟସଖୀଂ ।୩।

ବିରହଅନଳ ମାନସରୁ ନିବାରିବାକୁ ବାଞ୍ଛି କିଶୋରୀ ।
ଚଞ୍ଚଳ ଚିତ୍ତରେ ଯମୁନାତୀରକୁ ଗଲେ ଘେନି ସହଚରୀ ।
ତହିଁ ପୂର୍ବପରିଚିତ କୁଞ୍ଜକୁଟୀ ଦେଖି ଗତସ୍ୱବ ଚିତ୍ତ ।
ବିମୋହିତା ହୋଇ ସୁପ୍ତିଭବକୁ ଲଭିଲେ ଭ୍ରାନ୍ତିହୁହତ । ୩ ।

ତଦା କୃଷ୍ଣାଙ୍ଗୀ କନତନକନୀପଲ୍ଲବକୁଳୈଃ
ପରୀଣାହାତ୍ ପ୍ରେମ୍ଣାମଭ୍ୟୁଦୟଯୁତାଶଙ୍କିହୃଦୟୈଃ ।
ଦୃଗମ୍ଭୋଗମ୍ଭୀସ୍ତ୍ରିକୃତମୈତ୍ରୀରପୂର୍ଵୀଲହରଭ-
ର୍ବିଲୀନା ଧୂଳୀନାମୁପରି ପରିବବ୍ରେ ପରିଜନୈଃ । ୪ ।

କୃଷ୍ଣନଖସ୍ୱର ଦେଖି ଶ୍ରୀମତୀର ସଖୀମାନେ ବେଢ଼ି ରହି ।
କଦଳୀଦଳରେ ବିଞ୍ଚିଲେ ସଧୀରେ ଚେତନା ହୋଇବାପାଇଁ ।
ମୃଣାଳଶଯ୍ୟାରେ ଶୁଆଇ ରାଧାଙ୍କୁ ଅକୁଶଳ ଚିନ୍ତା କରି ।
କରନ୍ତେ ରୋଦନ ବହୁ ନେତ୍ରୁ ଜଳ ବଢ଼ିଲା ଯମୁନାବାରି । ୪ ।

ତତସ୍ତାଂ ନ୍ୟସ୍ତାଙ୍ଗୀମୁରସି ଲଳିତାୟାଃ କମଳିନୀ-
ପଲାଶୈଃ କାଳିନ୍ଦୀସଲିଲଶିଶିରୈର୍ବୀଜିତତନୁଂ ।
ପରାବୃତ୍ତଶ୍ୱାସାଙ୍କୁରକଲିତକର୍ଣ୍ଣାଂ କଲୟତା
ସଖୀସନ୍ଦୋହାନାଂ ପ୍ରମଦଭରଶାଲୀ ଧ୍ୱନିରଭୂତ୍ । ୫ ।

ତହୁଁ ଶ୍ରୀମତୀଙ୍କି ଲଳିତା ଛଢତ ଆଉଜାଇ ରଖିକରି ।
ପଦ୍ମପତ୍ରେ ଭରି ହିମ କାଳିନ୍ଦୀର ବିଞ୍ଚନ୍ତେ ବେଢ଼ି ସଖୀସ୍ତ୍ରୀ ।
ବହୁ କଷ୍ଟେ ଶ୍ୱାସ ହୁଅନ୍ତେ ପ୍ରକାଶ କିଶୋରୀର ଦେଖି ଏହା ।
ସକଳ ସଜନୀ ପ୍ରମୋଦରେ ଧ୍ୱନି ଉଠିଲେ ବହୁ ଉତ୍ସାହା । ୫ ।

ନିଧାୟାଙ୍କେ ପଙ୍କେରୁହଦଳବତଂସସ୍ୟ ଲଳିତା
ତତୋ ରାଧାଂ ନୀରାହରଣସରଣୌ ନ୍ୟସ୍ୟ ତରଣୌ ।
ମିଲନ୍ତଂ କାଳିନ୍ଦୀପୁଲିନଭୁବି ଖେଲାସ୍ତଗମଂ
ଦଦର୍ଶାଗ୍ରେ କଞ୍ଚିନ୍ନୂପୁରବିରୁତଂ ଶ୍ୱେତଗରୁତଂ । ୬ ।

ପଙ୍କଜପତ୍ରର ଶେଯରେ ସହିତ ଶୁଆଇଣ ଶ୍ରୀମତୀଙ୍କି ।

ଅଣିବାକୁ ଜଳ ତହୁଁ ତତକାଳ ଲଳିତା କରୁଁ ଗମନ ।
କାଳିନ୍ଦୀପୁଳିନସ୍ଥାନେ ମଧୁସ୍ୱନ କର କଦ୍ରଭୁକଗଣ ।
ତରେ ଏକ ଶ୍ୱେତହଂସକୁ ଅଗ୍ରତ ଦେଖିଲେ ସ୍ନେହ ତତ୍ପର । ୨ ।

ତଦାଲୋକସ୍ତୋକୋଚ୍ଛ୍ୱସିତହୃଦୟା ସାଦରମସୌ
ପ୍ରଣାମଂ ଷଂସନ୍ତ୍ରୀ ଲଘୁ ଲଘୁ ସମାସାଦ୍ୟ ସବଧଂ ।
ଧୃତୋତ୍କଣ୍ଠା ସଦ୍ୟୋ ହରିସଦସି ସନ୍ଦେଶହରଣେ
ବରଂ ଦୂତଂ ମେନେ ତମତିଲଲିତଂ ହନ୍ତ ଲଳିତା । ୨ ।

ଲଳିତା ସେ ହଂସ ଲୋକନେ ହରଷମାନସ ହୃଷ୍ଟ ହୋଇ ।
କରି ନମସ୍କାର ପୁଣି ପୁଣି ତାର ନିକଟେ ହୋଇଲେ ଯାଇଁ ।
ହୋଇ ଉତ୍କଣ୍ଠିତା ହେବାକୁ ବାରତା ତା ହାତେ ଶ୍ରୀକୃଷ୍ଣପାଶେ ।
ମଣିଲେ ପ୍ରଧାନ ଦୂତବର ମାନସରେ ସେ ଲଳିତହଂସେ । ୨ ।

ଅମର୍ଷାତ୍ ପ୍ରେମେର୍ଷ୍ୟାଂ ସପଦି ଦଧତୀ କଂସମଥନେ
ପ୍ରବୃତ୍ତା ହଂସାୟ ସ୍ୱମଭିଲଷିତଂ ଶଂସିତୁମସୌ ।
ନ ତସ୍ୟା ଦୋଷୋଽୟଂ ଯଦିହ ବିହଗଂ ପ୍ରାର୍ଥିତବତୀ
ନ କସ୍ମିନ୍ ଦୈନ୍ୟଂ ଦିଶତି ହରିଭକ୍ତିପ୍ରଣୟିତା । ୩ ।

ଶୁଭିଗଲେ ହରି ଏହୁ କ୍ରୋଧ ଧରି ଲଳିତା ସଜନୀ ହଂସ-
ଆଗେ ଆପଣାର କଷଣନକର କଲେ ବେଗେ ପରକାଶ ।
ପକ୍ଷିଆଗେ ଦୁଃଖ କହିବାରୁ ତାଙ୍କଠାରେ ଦୋଷ ନ ହୁଅଇ ।
ହରିଭକ୍ତି ଜନ କରନ୍ତି ସମାନ ବିଶ୍ୱାସ ସକଳଠାଇ । ୩ ।

ପତଙ୍ଗେନ୍ଦ୍ର ପ୍ରାପ୍ତେ ହରିତସ୍ୟପି ତୋୟେଷୁ ବସତିଂ
ପ୍ରମୋଦଂ କାଲୀନ୍ଦେ ବହସି ବିଶଦାତ୍ମା ସ୍ୱୟମସି ।
ଇତୋଽହଂ ଦୁଃଖାର୍ତ୍ତା ଶରଣମବଲା ତ୍ୱାଂ ଗତବତୀ
ନ ଭିକ୍ଷା ସମ୍ପୂର୍ଣ୍ଣେ ବ୍ରଜତି ହି କଦାଚିଦ୍ ବିଫଳତାଂ । ୪ ।

କହିଲେ ହେ ହଂସ ତୁମ୍ଭେ କର ବାସ ନିର୍ମଳ ସଳିଳ ଦେଖି ।
ଗଣ୍ଡେ ପଦ୍ମନାଳ ପାଇଲେ କବଳ [illegible] ଅତିଶୟ ସୁଖୀ ।

ଧବଳ ଶରୀର ଅଟଇ ତୁମ୍ଭର ଏହା ଦେଖି ଦୁଃଖ ହଟେ ।
ଉତ୍ତମପାତ୍ରରେ ପ୍ରାର୍ଥନା ଯେ କରେ କେବେ ତା ବିଫଳ ନୋହେ ।୯

ତ୍ୱରଂ ବସ୍ତୁ ତ୍ୟାଗ୍ମାନ୍ ବିରହଦହନଜ୍ୱାଲକଲିତାଃ
କଲାବାନ୍ ସାନନ୍ଦଂ ବସତି ମଥୁରାୟାଂ ମଧୁରିପୁଃ ।
ତଦେତଂ ସନ୍ଦେଶଂ ସ୍ୱମନସି ସମାଧେୟ ନିଖିଳଂ
ଭବାନ୍ କ୍ଷିପ୍ରଂ ତସ୍ୟ ଶ୍ରବଣପଦବୀଂ ସଙ୍ଗମୟତୁ । ୧୦ ।

ହେ ହଂସ କପଟୀ ହରି ଆମ୍ଭଙ୍କୁ ବିରହଅନଳେ ଦେଲ ।
ଚଲି ବନ୍ଧୁଗଣ କରି ସନ୍ତୋଷେଣ ରହିଲେ ମଥୁରା ଯାଇଁ ।
ସେଘେନ ଅମ୍ଭର ଏହି ଦୁଃଖଜୀର ମନେ ଘେନ ଯାଅ ତୁମ୍ଭେ ।
କହିବ ଶ୍ରୀକୃଷ୍ଣଶ୍ରବଣେ ଅବଶ୍ୟ ଏହା ଜଣାଉଛୁଁ ଆମ୍ଭେ । ୧୦ ।

ନିରସ୍ତପ୍ରତ୍ୟୂହଂ ଭବତୁ ଭବତୋ ବର୍ତ୍ମନି ଶିବ
ସମୁତ୍ତିଷ୍ଠ କ୍ଷିପ୍ରଂ ମନସି ମୁଦମାଧାୟ ସଦୟଂ ।
ଅଧସ୍ତାଦ୍ଧାବନ୍ତୋ ଲଘୁ ଲଘୁ ସମୁତ୍ତାନନୟନୈ-
ର୍ଭବନ୍ତଂ ବୀକ୍ଷନ୍ତାଂ କୁତୁକତରଲା ଗୋପଶିଶବଃ । ୧୧ ।

ହେ ହଂସ ତୁମ୍ଭର ନିର୍ବିଘ୍ନେ ମଙ୍ଗଳ ହେଉ ଯିବା ପଦବୀରେ ।
ଉଠିଯାଅ ମନେ ମୋଦ ବହି ତୂର୍ଣ୍ଣେ ଦୟା ବହି ଅମ୍ଭଠାରେ ।
କଉତୁକପ୍ରାୟ ଗୋପଶିଶୁଚୟ ମନବେଗେ ଧାଇଁଧାଇଁ ।
ଊର୍ଦ୍ଧ୍ୱଦୃଷ୍ଟି ହୋଇ ଘୋଡ଼ାଇବେ ତହିଁ ତୁମ୍ଭଙ୍କୁ ଦେଖିବାପାଇଁ ।୧୧।

ଯଦୋରୁତ୍ତଂସୋଽସୌ ବଠନମଲ୍ଲିକା ଦାନପତ୍ରିକା
ଯସ୍ୟ ନଚ୍ୟେ ମୂର୍ତ୍ତିଂ ପଶୁପରମଣୀଜୀବନପତିଃ ।
ତସ୍ୟ ଗନ୍ତବ୍ୟା ତେ ଅଖିଳ ଜଗଦେକପ୍ରଥିତୟା
ପଦବ୍ୟା ଭବ୍ୟାନାଂ ତିଳକ କିଲ ଦାସାର୍ହନଗରୀ । ୧୨ ।

ଯଦୁଶେଖର ପତି ଗୋପୀଙ୍କର ନିର୍ଦ୍ଦୟ ଅକ୍ରୂରସଙ୍ଗେ ।
ଯେଉଁ ପଥେ ଗଲେ ମଥୁରାକୁ ହେଲେ ହୃଦୟର ମାନସେ ବେଗେ ।
ଜଗତବିଖ୍ୟାତ ଅଟଇ ସେ ପଥ ହେ ଭବ୍ୟତିଳକ ଘେନ ।

ସେହୁ ପଥେ ଚଳିଯିବ ମଧୁପୁରୀ ନ ବୁଝିବ ଏଥେଁ ଆନ । ୧୨ ।

ଚଳଦ୍ଭ୍ରୂଲ୍ଲାସାଭଲ୍ଲ୍ୟଧବଳଗଣ୍ଡା ମୃଗଦୃଶୋ
ବଧୂଯୂନ୍ୟନ୍ତ୍ୟ ଯତ୍ର ପ୍ରବଳମଦନାବେଶବିବଶାଃ ।
ଭ୍ରମ୍ୟା ବଲ୍ଲୀଭବ୍ୟା ଦୟିତଚରଣସଙ୍ଗପ୍ରଣୟିନୋ
ଧ୍ରୁବଂ ସା ଚକ୍ରାଙ୍କୀ ଭବତି ସରଣୀ ଶତାଙ୍ଗସ୍ୟ ପଦବୀ । ୧୩ ।

ହେ ହଂସ ସେବନଯୋଗେ ଶ୍ୱେତବର୍ଣ୍ଣ କର ଗଣସ୍ଥଳ ଗୋପୀ ।
ଶ୍ରୀକୃଷ୍ଣଚରଣ ଚିହ୍ନ ଶିଶୁଗଣ ସହିତେ ହୋଇ ସନ୍ତାପୀ ।
ଯେଉଁପଥେ ହର ଅସିବା ବର୍ତ୍ମର ସଦା ବସିଥିବେ ଜଗି ।
ଶ୍ରୀକୃଷ୍ଣରଥର ଥିବ ଚକ୍ରଧାର ଚିହ୍ନିବ ସେ ପଥ ବେଗି । ୧୩ ।

ପିବନ୍ ଜମ୍ବୂଶ୍ୟାମଂ ମିହିରଦୁହିତୁର୍ବାରି ମଧୁରଂ
ମୃଣାଳୀର୍ଭୁଞ୍ଜାନୋ ହିମକରକଳାକୋମଳରୁଚଃ ।
କ୍ଷଣଂ ତୁଷ୍ଟସ୍ତିଷ୍ଠନ୍ନିବିଡ଼ବିଟପେ ଶାଖିନି ସଖେ
ସୁଖେନ ପ୍ରସ୍ଥାନଂ ରଚୟତୁ ଭବାନ୍ ବୃଷ୍ଣିନଗରେ । ୧୪ ।

ଜାନୁପର ନୀଳ ଯମୁନାର ଜଳ ମଧୁର ତା ପାନକର ।
ଶଶିକଳା ତୁଲ ମୃଣାଳ କବଳ କର ଚିତ୍ତେ ତୋଷଧର ।
ନିବିଡ଼ ଶୀତଳ ଅଟେ ଯାର ଡାଳ କ୍ଷଣେ ବସି ସେ ତରୁରେ ।
ହଂସ ମଧୁପୁର ଯିବାକୁ ବର୍ତ୍ମର କରିବ ସୁଖମନରେ । ୧୪ ।

ବଳାଦାକ୍ରନ୍ଦନ୍ତୀ ରଥପଥିକମକ୍ରୂରକୁଟିଳଂ
ବିବୃଦ୍ଧାସ୍ରଶ୍ରୋତଶ୍ଚରନ୍ନନୁଯଯୌ ଯେନ ରମଣଂ ।
ତମାର୍ଦ୍ରୌ ପନ୍ଥାନଂ ରଚୟ ଚରିତାର୍ଥା ଭବତୁ ତେ
ବସ୍ତଜନ୍ତୀ ସଙ୍କୋପର ପରମହଂସସ୍ତ୍ରିଚତୁରସ୍ୟଂ । ୧୫ ।

ଅଣିଥିବା ରଥ ଅକ୍ରୂର ସହିତ ହର ଯେଉଁ ବାଟେ ଗଲେ ।
କାନ୍ଦଣ ଗୋପୀଏ ବନ୍ଧୁହୃଦ ଯାଏ ରଥପଛେ ଧାଇଁଥିଲେ ।
ଅମ୍ଭେ ଯା କହିବୁ ସେ ପଥ ପଦ୍ମଳ ଚିହ୍ନି ହଂସବର ଯିବ ।
ଏ ତୁମ୍ଭ ଜୀବନ ଜଗତବନ୍ଦ୍ୟାତ ହୋଇ ସଦା ରହି ଥିବ । ୧୫ ।

ଅକସ୍ମାଦୁନ୍ମାଦଂ ଦଧଦଧିପଦଭ୍ରଂଶୁକବରଂ
ଯମାରୂଢୋ ଗୂଢ଼ପ୍ରଣୟଲହରୀଃ କମଲଦୃଶାଂ ।
ତବ ଶ୍ରାନ୍ତସ୍ୟାନ୍ତଃ ସ୍ଥଗିତରବିବିମ୍ବଃ କିଶଲୟୈଃ
କଦମ୍ବଃ କାଦମ୍ବତ୍ୱରିତମବଲମ୍ବ୍ୟଃ ସ ଭବତା । ୧୭ ।

ହେ ହଂସ ଶ୍ରୀହରି ଅମ୍ବୁ ବସ୍ତ୍ର ହରି ନେଇ ଯେଉଁ କଦମ୍ବରେ ।
ବସିଥିଲେ ଗୂଢ଼ ପୀରତିକ ଦୃଢ଼ ପ୍ରକାଶିବା ମାନସରେ ।
ପୁଣି ସେ ପାଦପେ ନ ପଡ଼ଇ ଧାପେ ଖରା ନବପଲ୍ଲବଘଟେ ।
ହେଲେ ପଥଶ୍ରାନ୍ତ ତହିଁରେ କ୍ଷଣେକ ବସି ଉଡ଼ିଯିବ ସ୍ୱଚ୍ଛେ । ୧୭ ।

ହରନ୍ତୀ ଲାବଣ୍ୟଂ ହରି ହରି ଶିଖଣ୍ଡସ୍ତବକିନୀ
ଦଧାନା ସାଧୀୟଃ କନକକମଲଦ୍ୟୋତବସନଂ
ତମାଲ ଶ୍ୟାମାଙ୍ଗୀ ସରଳମୁରଳୀଚୁମ୍ବିତମୁଖୀ
ଜଗୌ ଚନ୍ଦ୍ରଂ ଯତ୍ର ପ୍ରକଟପରମାନନ୍ଦଲହରୀ । ୧୭ ।

ସେହି କଦମ୍ବରେ ମୟୂରୀ ଝୋଙ୍କରେ ସକଳଦଗ ମୋହୁଛନ୍ତି ।
କନକ ପଦ୍ମପ୍ରେ ବାସ ତାର ଦେହେଁ ରୂପେ ତମାଳ ଗଞ୍ଜୁଛି ।
ପରମ ଆନନ୍ଦ ସ୍ୱନ ମନ୍ଦ ମନ୍ଦ କରେ ବଂଶୀସ୍ୱନ ପରି ।
ହେ ହଂସ ଏମନ୍ତ ଦେଖିଯିବ ପଥ କହୁ ଶୀଘ୍ରଗତି କରି । ୧୭ ।

ତସ୍ୟା ବୃନ୍ଦଃ କ୍ରୀଡ଼ାଭବସବକସଦ୍ବକ୍ଷବବଧୂ
ବପୁର୍ବଂଶୀ ତ୍ରସ୍ୟନ୍ମୃଗମଦକଣଶ୍ୟାମଳତୟା ।
ଦଧାତବ୍ୟା ବଲ୍ଲୀଶକଦଳିତମଲ୍ଲୀଲତୟା
ସମନ୍ତାଦୁଲ୍ଲାସସ୍ତବ ମନସି ସ୍ୱସ୍ଥଲତୟା । ୧୮ ।

ବ୍ରଜବଧୂଗଣ ନୃତ୍ୟ ପୁଣ ପୁଣ କରୁ ତାଙ୍କ ଦେହୁଁ ଝଡ଼ି ।
ମୃଗମଦ କଣ କରି ଶ୍ୟାମବର୍ଣ୍ଣ ସେ ସ୍ଥାନରେ ଥିବ ପଡ଼ି ।
ଗୋପିକାମଣ୍ଡଳୀ ନୃତ୍ୟେ ହୋଇ ହଳ ମଲ୍ଲୀଲତା ଯହିଁ ଥିବ ।
ସେହି ସ୍ୱସ୍ଥାନ କଲେ ଦରଶନ ତୁମ୍ଭର ମୋଦ ବଢ଼ିବ । ୧୮ ।

ତଦନ୍ତେ ବାସନ୍ତୀବିରଚିତମନଙ୍ଗୋତ୍ସବକଳା

ଚତୁଃଶାଲଂ ଶୌରେଃ ସ୍ଫୁରତି ନ ଦୃଶୌ ଚେତ୍ ଵିକିରେଃ ।
ତଦାଲୋକୋଦ୍ଭେଦ ପ୍ରମଦଭରବିସ୍ମାରିତଗତି-
କ୍ରିୟସ୍ତ୍ୱଂ ଜାନୀତେ ତାବଦ୍ଧ୍ରୁଷ୍ଟି ବତ ହତା ଗୋପବନିତାଃ । ୧୯ ।

ହେ ହଂସ ସେ ସ୍ୱସମଣ୍ଡଳୀର ପାଶ ମାଧବାଲୟଠାରେ ବୃତ ।
କୃଷ୍ଣ-କେଳିପୁର ଚତୁଃଶାଳଘର ଅଛି ନ ଦେଖିଟ ନେତ୍ର ।
ତାହାର ଲୋକନେ ଗାଢ଼ ପ୍ରେମମନେ ଜନକି ନ ଯିବ ତାହିଁ ।
ଵଲେ ବିସ୍ମରଣ ମଥୁରା ଗମନ ମତରୁଁଟି ଗୋପଗୋଈ । ୧୯ ।

ମମ ସ୍ୱାଦର୍ଥାନାଂ କ୍ଷତିରିହ ବିଲମ୍ବାଦ୍ୟଦପି ତେ
ବିଲୋକେଥାଃ ସର୍ବଂ ତଦପି ହରିକେଳିସ୍ଥଳମିଦଂ ।
ତବେଦ୍ଧଂ ନ ବ୍ୟର୍ଥା ଭବତୁ ଶୁଚିତା ଵଃ ସନ୍ତୁ ସଖେ
ଗୁଣେ ଯସ୍ମାଣୂରଦ୍ୱିଟି ମଦନବେଷାପ୍ୟ ନ ଭବେତ୍ । ୨୦ ।

ଯେବେଟି କହ ହଂସ ହରିକେଳିବାସ ଦେଖିବା ଶରଧା ହେବ ।
ଆମ୍ଭକାର୍ଯ୍ୟ ହାନି ହେଲେ ହେବ ପୁଣି ପଛେ ତାହା ସୁମରବ ।
ଶ୍ରୀହରିମନ୍ଦିର ଦେଖିବା କର୍ମର ନୋହିବ ବ୍ୟର୍ଥ ଜାଣ ।
କୃଷ୍ଣେ ଯାର ମନ ନାହିଁ ତା ଜୀବନ ଥିଲେ ହେଁ ନାହିଁଟି ଶୁଣ ।୨୦।

ସକୃଦ୍ୱଂଶୀନାଦଶ୍ରବଣ-ମିଳିତାଭୀରବନିତା-
ରହଃକ୍ରୀଡ଼ାସାକ୍ଷୀ ପ୍ରଚଳଦଲତାଳଦ୍ରୁମଗଣଃ ।
ସ ଧେନୂନାଂ ବନ୍ଧୁର୍ମଧୁମଥନଖଟ୍ଟାୟିତଶିଳଃ
କରିଷ୍ୟତ୍ୟାନନ୍ଦଂ ସପଦି ତବ ଗୋବର୍ଦ୍ଧନଗିରିଃ । ୨୧ ।

ଥରେ ବଂଶୀସ୍ୱନ କରନ୍ତେ ଶ୍ରବଣ ଗୋପୀଏ ଯାଇ ବହନ ।
ଏକାନ୍ତରେ ମିଳି କୃଷ୍ଣ ସଙ୍ଗେ କେଳି କଲେ ଯା-ନିକଟେ ଯେନ ।
ଲତାକୁଞ୍ଜଘର ସ୍ଥାନେ ସ୍ଥାନେ ଯାର ଧେନୁପ୍ରିୟ ଶ୍ରୀହରିର ।
ଖଟ୍ୟାଶିଳା ଯହିଁ ଗୋବର୍ଦ୍ଧନ ସେହୁ ମୋଦ କରିବ ତୁମ୍ଭର । ୨୧ ।

ତତ୍ପୈକାଦ୍ରିଂ ଭଜାଙ୍କିତକରପରିଷ୍ୱଙ୍ଗରସିକଂ
ମଣ୍ଡଚକ୍ରେ ଶକ୍ରେ ମଣ୍ଡଶିଖରଣାଂ ଶେଖରତୟା ।

ଅସ୍ୱଡଂ ଶୃଙ୍ଗାଣାଂ କନ୍ତୁ ହରହସ୍ତଂ ଯଃ ପରିହସନ୍
ଯଥାର୍ଥଂ ସ୍ୱଂ ନାମ ବ୍ୟଥିତ ଭୁବି ଗୋବର୍ଦ୍ଧନ ଇତି । ୧୧ ।
ମହୀରେ ଯେତେକ ଗିରି ସେମାନଙ୍କ ମଧ୍ୟରେ ପ୍ରଧାନ ଯେହୁ ।
ଉଚ୍ଚଧରଣର ଉତ୍ସର୍ଗରୁ ଯାର ନାମ ଅଛି ଖ୍ୟାତ ହୋଇ ।
ପର୍ବତଙ୍କ ପକ୍ଷଦନ୍ତ୍ୟା ସହସ୍ରାକ୍ଷଗର୍ବ ଯେ କରି ଚୂର୍ଣ୍ଣ ।
ଶ୍ରୀକୃଷ୍ଣଙ୍କ ଖଣ୍ଡ ଚିଲାପରି ଦଣ୍ଡ ବହୁଛନ୍ତି ସେ ଗୋବର୍ଦ୍ଧନ । ୧୨ ।
ତମାଲସ୍ୟା ନେଦୀୟାନ୍ ଗିରିପତିସରେ ସନ୍ତି ଚପଲାଃ
ପୁଲିନ୍ଦା ଗୋବିନ୍ଦସ୍ମରଣରଭସୋତ୍ସୃଷ୍ଟବପୁଷଃ ।
ଶନୈସ୍ତାସାଂ ତାପଂ କ୍ଷଣମପନୟନ୍ ଯାସ୍ୟସି ଭବା-
ନବଶ୍ୟଂ କାଲିନ୍ଦୀସଲିଲଶିଶିରୈଃ ପକ୍ଷପବନୈଃ ।
ଗୋବର୍ଦ୍ଧନପ୍ରାନ୍ତେ ତମାଲ ଦେଖନ୍ତେ ଚପଲମାନସ ହୋଇ ।
ହରି ସ୍ମରି ସ୍ନେହେ ଥିବେ ଶବରୀଏ ବିରହତାପରୁ ବହି ।
କାଲିନ୍ଦୀସଲିଲମିଶା ପକ୍ଷାନିଳ ଯୋଗେ ସେ ତାପ ତାଙ୍କର ।
କରି ଅପହାର ଗମିବ ସତ୍ୱର କୃଷ୍ଣପାଶେ ପକ୍ଷିବର । ୧୩ ।
ତଦନ୍ତେ ଶ୍ରୀକାନ୍ତ ସ୍ମରସମରଧାଟୀଘୂଲହରୀ ।
କଦମ୍ବାନାଂ ବାଟୀ ରସିକପରିପାଟୀଂ ସ୍ଫୁଟୟତି ।
ଉପାସୀନସ୍ତାସାଂ ନ ଯଦି ପରିତୋ ନନ୍ଦସି ତତୋ
ବଭୂବ ବ୍ୟର୍ଥା ତେ ଘନରସନବ୍ୟାସବ୍ୟସନତା । ୧୪ ।
ସେ ଗିରି ନିକଟେ ଶୋଭା ପରକଟେ କୃଷ୍ଣକେଳି କୁଞ୍ଜପୁର ।
ତା ପାଶେ ରସିକ ଉଦ୍ବେଗଦାୟକ କଦମ୍ବବାଟୀ ପ୍ରଚୁର ।
ତୁମ୍ଭେ ତହିଁ କ୍ଷଣେ ବସି ତୋଷମନେ ପରମାନନ୍ଦ ଲଭିବ ।
ଏବେ ଜଳଚର ନୋହିଲେ ତୁମ୍ଭର ରସିକତା ବୃଥା ହେବ । ୧୪ ।
ଶରଜ୍ଜ୍ୟୋତ୍ସ୍ନାଶ୍ରେଣୀପ୍ରତିଭଟମହେଣ୍ଡୂପୁରଶିର-
ସ୍ଥିରଂ ଶୁଭ୍ରଂ ବୃନ୍ଦାବନପରିସରେ ଦ୍ରକ୍ଷ୍ୟସି ଭବାନ୍ ।
ଯଦାସେଦୁଷ୍ଟଂ ଦୂର୍ବ୍ୱାଦ୍ଭିଲଲିତ ତଲ କୈଳାସଶିଖରୀ

ଭ୍ରମାକ୍ରାନ୍ତଃ ସ୍ୱାନ୍ତେ ଗିରିଶସୁହୃଦଃ କିଙ୍କରଗଣୈଃ । ୧୫ ।
ହେ ହଂସ ଶରତକାଳ ମେଘବ୍ରାତ ସମ ଶୁକ୍ଳବର୍ଣ୍ଣରେ ।
ଅଭଷ୍ଟ-ଅସୁରମୁଣ୍ଡ ଗୋକୁଳର ପ୍ରାନ୍ତେ ପଡ଼ିଛୁ ଶୂନ୍ୟରେ ।
ବହୁକାଳରୁ ଅଛି ତାକୁ ଦୂରୁ ଦେଖି ଯକ୍ଷଗଣମାନେ ।
କଇଳାସ ଗିରି ଅଟେ ହେବେ ବୋଲି ମିଳନ୍ତି ତା-ସନ୍ନିଧାନେ । ୧୫ ।
ରୁବନ୍ ଯାନ୍ତୁ ସ୍ୱୈରଂ ତରମଦଘନ୍ତ୍ରୀ ତୃମ୍ବିତରୁଚେ
ନତମ୍ଭେନେ ବୃନ୍ଦାବନଭୁବ ସଖେ ସନ୍ତି ବହବଃ ।
ପରାବର୍ତ୍ତିଷ୍ୟନ୍ତେ ଭୁଜଗମୃଗଙ୍ଗନ୍ନୂପୁରରବା-
ଦୁବାଧ୍ୱାନାସ୍ତାସାଂ ବହୁରପି ଯତାଃ କ୍ଷିପ୍ରମପରଃ । ୧୬ ।
ହେ ହଂସ ଗମନକର ସ୍ୱଚ୍ଛେ ସ୍ୱନ କର ବୃନ୍ଦାବନପଥେ ।
ଛୁଇଁଥିବ ଦଶଦଶା ନାୟିକାଙ୍କ ତହିଁ ରହିଥିବେ କେତେ ।
ତୁମ୍ଭର ରବକ ଶୁଣି କୃଷ୍ଣପାଦ ନୂପୁରଧ୍ୱନି ଭ୍ରମରୁ ।
ସେମାନଙ୍କ ଚିତ୍ତେ ଜୀବ ଫେରି ଗୃହେ ପଶିବ ହେଲା ନ କର । ୧୬ ।
ଉପାସୀନଃ ଶାଖାନ୍ତରମିଳିତକଣ୍ଠଚ୍ଛବି ସୁଖଂ
ଦଧୀଥା ଶ୍ରେଣୀରେ କ୍ଷଣମପି ଘନଶ୍ୟାମଳରୁଚୌ ।
ତତୋ ହଂସୌ ବହ୍ନିକିଶ୍ଲିଳନଭସନ୍ତେଜମିଷସ୍ତ୍ରୀ
ସବର୍ଣ୍ଣିକ୍ଷୁଂ ବକ୍ଷ୍ଣୁଂ ହଳଧରତଟଂ ଭୂଲଘ୍ନିତା । ୧୭ ।
ହେ ହଂସ ଭାଗ୍ୟବନ୍ତ ଆକାଶର ସର୍ବବ୍ୟାପୀ ହେବାପାଇଁ ।
ବଡ଼େ କୃଷ୍ଣବର୍ଣ୍ଣ ଅଟେ ସେ ବଦନ ବସିବ ତା-ଡ଼ାଳେ ଯାଇଁ ।
ଅନ୍ୟ ପାଶେ ରତ ମିଳନ୍ତେ ସେ ଛବ ଧରିବ ଏପରି ଶୁଣ ।
ଶଙ୍ଖ ଚକ୍ର ଧରି ତ୍ରିବିକ୍ରମ ହରି ସମ ତୁମ୍-ଯୋଗେ ପୁଣ । ୧୭ ।
ଉପସ୍ଥାଭର୍ନେତ୍ରେ ବିଗଳଦମଳପ୍ରେମସଲିଳେ-
ମୂର୍ଦ୍ଧ୍ନଃ ଚିକ୍ରସ୍ତମ୍ଭାଂ ତଦୁର ତତୁସଶ୍ୟସ୍ତ୍ରିଭଙ୍ଗବ ।
ଜିହ୍ମାଥା ବଣ୍ୟାତାଂ ଷୁଷ୍ଟମେବ ଭବଦ୍ବାନ୍ଧବରଥଂ
ପ୍ରବଷ୍ଟୁଂ ମଂସ୍ୟନ୍ତେ ବିଶ୍ୱମଞ୍ଚହଦେବ୍ୟସ୍ତ୍ୱୟି ଗତେ । ୧୮ ।

ହେ ହଂସ ରାଧାଙ୍କ ପ୍ରେମାଶ୍ରୁରେ ଉନ୍ନତା ତୃଣମାନେ ଛନ୍ତି ଯହିଁ ।
ତାଙ୍କର ବଦନଙ୍କର ସେହି ସ୍ଥାନ ଜଗତେ ଖ୍ୟାତ ଅଟଇ ।
ତୁମ୍ଭେ ଉଡ଼ିଗଲେ ସେହି ଯାଏ ଡ଼ୋଲେ ଦେଖି ବନଦେବୀମାନେ ।
ହର୍ଷରବେ ହଂସରଥେ ଚତୁର୍ମୁଖସ୍ୟ ଆସନ୍ତି ମର୍ତ୍ତ୍ୟଭୁବନେ । ୨୮ ।

ଉଦଞ୍ଚନ୍ନେତ୍ରାମ୍ଭଃପ୍ରସରଲହରୀ-ପିଚ୍ଛିଲପଥ-
ସ୍ଖଲତ୍ପାଦନ୍ୟାସପ୍ରଣିହିତବଲମ୍ବାକୁଲଧିୟଃ ।
ହରୌ ଯସ୍ମିନ୍ନଷ୍ଟେ ଦ୍ରୁତଯମୁନାକୂଳଗମନ-
ସ୍ପୃହାକ୍ଷିପ୍ତା ଗୋପ୍ୟୋ ଯଯୁରନୁପଦଂ କାମପି ଦଶାଂ । ୨୯ ।

ହେ ହଂସ ଗୋପୀଏ ଶ୍ରୀକୃଷ୍ଣବିରହେ ନୟନୁ ଅଶ୍ରୁ ବୁହାଇ ।
ଯମୁନାର ତୀରେ ଦେଖିବା ଆଶାରେ ହରିଙ୍କି ଗମନ୍ତେ ତହିଁ ।
ପଡ଼ି ନେତ୍ରଜଳ ସରଣୀ ପଙ୍କିଲ ହେବାରୁ ବିଳମ୍ବ ଗତି ।
ହୋଇ ଖସୁ ଗୋଡ଼ ପାଦନ୍ୟାସ ହୁଡ଼ି ନୁଅଇ ତହିଁ ଝୁଁଠିଛ । ୨୯ ।

ମୁହୁର୍ଲୀଲାସ୍ଫୀତା ପ୍ରମଦମିଳଦାଭୀରପୁରୁଷା-
ହତାଶେନ ଦ୍ରଷ୍ଟୈଃ ଫଣିମଣିଭିରୁଲ୍କୈର୍ଧୂମଲରୁଚୌ ।
ପୁରସ୍ତ୍ରିନ୍ଦ୍ରୀପଦ୍ମମକୁସୁମବଞ୍ଚିଲ୍ଲସ୍ଥଳଭୌ
ତ୍ୱୟା ପେୟଂ ପୂର୍ଣ୍ୟ ମଧୁରମୁଦକଂ କାଳୀୟହ୍ରଦେ । ୩୦ ।

କାଳୀୟହ୍ରଦରେ ନୃତ୍ୟ ଫଣିଶିରେ ବାଉବାର କରୁଁ ହରି ।
ଖସି ମଣିଗଣ ଧୂମଳବରଣ ହୋଇଛନ୍ତି ଯା'ହାର ବାରି ।
ନୀପକୁସୁମର ପଡ଼ିଣ କେଶର ହୋଇଅଛି ସୁବାସିତ ।
ପହଞ୍ଚି କାଳୀୟହ୍ରଦ ଜଳ ପିଅ ମଧୁର ବରଟାକାନ୍ତ । ୩୦ ।

ତୃଣାବର୍ତ୍ତଦ୍ୱେଷ୍ଟୁର୍ବିରହଦବସନ୍ତାପିତତନୋଃ
ସଦାବାଷ୍ପକ୍ଲିନ୍ନପ୍ରଣୟିବନମାଲୋନ୍ନତପଦଃ ।
ବିଧାତବ୍ୟୋ ନନ୍ଦସ୍ତବକବରସମ୍ବର୍ଦ୍ଧିତଶ୍ରୁତ
ସ୍ତ୍ୱୟା ବୃନ୍ଦାଦେବ୍ୟାଃ ପରମହିତକସ୍ୱାଦ୍ୱନନହର୍ଷଃ । ୩୧ ।

ତୁଳସୀ ରୂପରେ ବୃନ୍ଦା ସେହିଠାରେ ଥାଇ ତୃଣାବର୍ତ୍ତହନ୍ତା ।

ବିଚ୍ଛେଦ ଅନଳ ଯୋଗେ ସେ ଦୁର୍ବଳ ଲଭି ଗୋପୀଙ୍କର ଚିନ୍ତା ।
ନବୀନମଞ୍ଜରୀ ଶୁଷ୍କ ହେବେ ଧରି ଶୋଭିତାଙ୍ଗ ପ୍ରକଟନ ।
କରୁଥିବେ ହଂସ ବନସ୍ଥେ ଅବଶ୍ୟ କରିବ ତାଙ୍କୁ ବନ୍ଦନ । ୩୧ ।

ଇତ କାନ୍ତ୍ୱା କେକାକୃତବିରୁତମେକାଦଶବନଂ
ସମାବୃତ୍ତଂ ବୃନ୍ଦୈର୍ଦ୍ରୁମମଧୁବନଂ ଦ୍ୱାଦଶମିଦଂ ।
ପୁରୀ ଯସ୍ମିନ୍ନାସ୍ତେ ଯଦୁକୁଳଭୁବାଂ ନିର୍ମଳଯଶୋ-
ଭରାଣାଂ ଧାମାଭିର୍ଧବଳିତଧରିତ୍ରୀପରିସରା । ୩୨ ।

ହେ ହଂସ ମୟୂରମାନଙ୍କର ସ୍ୱର ହେଉଥିବ ଯହିଁ ଯହିଁ ।
ଏସନ ଏଗାର ବନକୁ ବନ୍ଦନ ଅତିକ୍ରମ କରି ଯାଇ ।
ମିଳ ମଧୁବନ ଯେ ବୃନ୍ଦରେ ଘନ ଦ୍ୱାଦଶବନ ତା ପାଶେ ।
ଯଦୁମାନଙ୍କର ସ୍ୱଚ୍ଛ ଯଶଙ୍କର ଯୋଗ ଧାମ ଶ୍ୱେତ ଦିଶେ । ୩୨ ।

ନିକେତୈସ୍ୱର୍ଣ୍ଣୈ ଶିଖରଶିଖରୋଦ୍ଭମ୍ଭ୍ରଭବତୈ-
ରବଷ୍ଟମ୍ଭସ୍ତମ୍ଭାବଳିବଳୟିତୈଃ ପୁଷ୍ପିତବନା ।
ନିବିଷ୍ଟା କାଳିନ୍ଦୀତଟଭୁବି ଭବାଧ୍ୱାସିତସଖେ
ସମନ୍ତାଦାନନ୍ଦଂ ମଧୁରଜଲବୃନ୍ଦାମଧୁପୁରୀ । ୩୩ ।

ଯହିଁ କଇଲାସ ସଦୃଶ ବିଶେଷ ଶୋଭା ସ୍ତମ୍ଭଆବଳୀରେ ।
ସୁପୁଷ୍ପିତବନମାନଙ୍କେ ଶୋଭନ ବିକାଶ ଯମୁନାତୀରେ ।
ଏସନ ଭବନ କୂଳେ ବିଦ୍ୟମାନ ଅଛି ସ୍ୱାଦୁଜଳ ଯହିଁ ।
ସେହୁ ମଧୁପୁର ଅବଶ୍ୟ ଭ୍ରମୁର ଆନନ୍ଦ ଦେବ ବଢ଼ାଇ । ୩୩ ।

ବୃଷଃ ଶମ୍ଭୋର୍ଯସ୍ୟାଂ ଦଶତି ନବମେକତ୍ର ଯବସଂ
ବରଶ୍ଚୈରନ୍ୟସ୍ମିନ୍ ଲେଢି କଲହଂସୋ ବିଷଲତାଂ ।
କ୍ୱଚିତ୍ କ୍ରୌଞ୍ଚାରାତେଃ କବଳୟତି କେକୀ ବିଷଧରଂ
କଲୀତେ ଶକ୍ତିକ୍ୟା ବଲୟପୁରଶ୍ରୀ ପଲ୍ଲବମିତଃ । ୩୪ ।

ସେହୁ ମଧୁପୁରେ କେବଣ ସ୍ଥାନରେ ଶିବବୃଷ ଖାଏ ଘାସ ।
ତାହିଁ ବ୍ରହ୍ମାଁ ଯାନ ବିଷଲତା ଗ୍ରାସ କରୁଥିବେ ଅହେ ହଂସ ।

କାହିଁ ଶତ୍ରାନନମୟୂର ରୋଚନ କରୁଥିବ ଅହୁରୁଚ ।
କାହିଁ ଇନ୍ଦ୍ରକର୍ଣ୍ଣ କରେ ଗୋଙ୍କକର ଶଙ୍ଖୀପତ୍ର କବଳ ।୪୩ ।

ଅବୋଧସ୍ତ୍ୱଃ କାଯ୍ୟାନ୍ତହ୍ନ ବଗଳତାଂ ପ୍ରଚ୍ଛଦପଟୀଂ
ବମନ୍ତ୍ରାମଙ୍ଗାସୀଃ ପଥି ପଥି ନ ମୁକ୍ତାବଳମପି ।
ଅପି ଶ୍ରୀଗୋବନ୍ଦନଶ୍ରବଣମଦସମତ୍ତ୍ୱହୃଦୟେ ।
ସଖୀର ଗ୍ୟାଢ଼ଂ ତେ ହସତ କୁଳଟାନାଂ କୁଳମିଦଂ ।

ହେ ସଖି ତୁମ୍ଭର ଦେହରୁ ଅମ୍ବର ଖସିପଡ଼େ ମୁକ୍ତାହାର ।
ଗଳ ପଡ଼ୁଅଛି ପଥେ ତାହା କିଛି ନ ଜାଣ ଯେ କିମ୍ବତର ।
ଗୋହନ ଶ୍ରବଣମଦସ୍ୱରେ ମନ ଉନ୍ମତ୍ତ କରଛ ସତ ।
ତୁମ୍ଭ ସଙ୍ଗବ୍ରତ ହୋଇବ ଜନ୍ଦତ ହସିବେ କୁଳଟାବ୍ରାତ । ୩୪।

ଅସବ୍ୟଂ ବତ୍ରାଣା ପଦମଧୁରଭାଷାଭିସମସୌ
ପ୍ରସ୍ଥାତାହଂ ମୂର୍ଦ୍ଧ୍ନି ହରମ ମମ ବେଣୈଃ କମଧୂନା ।
ଅମନ୍ଦାହାଶଙ୍କେ ସଖି ପୁରପୁରନ୍ଧ୍ରୀକଲକଲା-
ଦନନ୍ଦାସ୍ତେ ବୃନ୍ଦାବନକୁସୁମଧନ୍ୱା ହୃଜସୃତେ । ୩୫ ।

ହେ ସୁଶ୍ରେ ଅଲକ୍ତ ବାମଚରଣେତ ନ ଘେନ ଗମନ କର ।
ଆସିଲି ମୁଁ ଏବେ କ ଯ ଅଛି ତୁମ୍ଭେ କ କାର୍ଯ୍ୟ ମୋ ସୁବେଶର ।
ପୁରଦ୍ୱାରେ ଗୋପବଳନାବାକଲାପ-କଳ କଳ ଶୁଣି ଶଙ୍କା ।
ହୋଏ ବୃନ୍ଦାବନ-ପୁଷ୍ପଶରସନ ଜୟୀ ଇଚ୍ଛାକରେ ଏକା । ୩୬ ।

ଅୟଂ ଲୀଲାପାଙ୍ଗସ୍ନପିତ ପୁରବୀଥୀପରିସରେ
ନବାଶୋକୋତ୍ତଂସସ୍ଥଳଧ ପୁରତଃ କଂସଜୟୀ ।
କମସ୍ମାନେତସ୍ମାନ୍ନିଭୃତବନପୃଷ୍ଠାଦ୍ବିନୁଦତି
ହ୍ରେମେତା ସ୍ତ୍ରବ୍ଧାକ୍ଷୀ ସ୍ତ୍ରଗପି ଗବାକ୍ଷାବଳମପି । ୩୭ ।

ଯେ ଲୀଳାନୟନ ଅପାଙ୍ଗରେ ସ୍ନାନ କରୁଛନ୍ତି ପୁରବୀଥୀ ।
ନୂତନ ଅଶୋକଫୁଲେ ମଣ୍ଡି ଶେଖ ଯାଉଛନ୍ତି କଂସାସୁର ।
ମଣିରୂବକର ବାତାୟନଦ୍ୱାର ସବୁ ତୁ ଘୋଡ଼ାଇ ଏକା ।

ସ୍ଥିର ନୟନରେ ଦେଖି ତାଙ୍କୁ ବାରେ ଅମ୍ଭେ ନ'ପାରିଲୁଁ ଦେଖି ।୩୭

ମୁହୁଃ ଶୂନ୍ୟାଂ ଦୃଷ୍ଟିଂ ବହସି ରହସି ଧ୍ୟାୟସି ସଦା
ଶୃଣୋଷି ପ୍ରତ୍ୟକ୍ଷଂ ନବଜଲଦନାଦାପନୟନଂ ।
ତତଃ ଶଙ୍କେ ପଙ୍କେରୁହମୁଖି ଯଯୌ ଶ୍ୟାମଳରୁଚିଃ
ସ ଯୂନାମୁତ୍ତଂସସ୍ତବନୟନବୀଥୀପଥିକତାଂ । ୩୮ ।

ହେ ପଦ୍ମବଦନେ ବାରଂବାର ଶୂନ୍ୟେ କାହିଁକି ଦୃଷ୍ଟି ଦେଉଛ ।
କିବା ଏକାନ୍ତରେ ଭାବୁଛ ଅନ୍ତରେ ସାକ୍ଷାତେ କି ଶୁଣୁଅଛ ।
ନବଘନଙ୍କର ଜନଙ୍କର ଗିର ଏହା ଦେଖି ଶଙ୍କା ମୋର ।
ହୋଇ ଯୁବାବର ସେ ଶ୍ୟାମସୁନ୍ଦର ପଡ଼ିଲେ କି ନେତ୍ରେ ତୋର ।୩୮

କଲଙ୍କଂ ମାସ୍ୱେଦାରନ୍ଧ ସଖି ପୁନର୍ଧ୍ୟାସ୍ୟତି ହରେ-
ସ୍ତବାପାଙ୍ଗକ୍ରୀଡ଼ା ନବତପରତର୍ଦ୍ଧ୍ୟାଗ୍ରହଣତାଂ ।
ଇତ୍ଥଂ ସ୍ୱୈରଂ ଯସ୍ୟାଂ ପଥି ପଥି ନୃସ୍ୱରେରଭିନବ-
ପ୍ରବେଶେ ନାରୀଣାଂ ଉତ୍ତରଳସଞ୍ଜଳ୍ପା ବବୃଧିରେ । ୩୯ ।

ହେ ସଖି କଳଙ୍କ ପ୍ରାପ୍ତେ କର ମନ୍ତ୍ରା ନ କାନ୍ଦ ଅସବେ ପେଉ ।
ସେ ହରି ଭ୍ରମର ନୟନକ୍ରୀଡ଼ାର ଭାବ ଗ୍ରହଣ କରିବ ।
ମୁଖର ମଥୁରା ପ୍ରବେଶେ ଅଧୀର ହୋଇ ପଥ ପାରୁଶରେ ।
ନାରୀ କୋଳାହଳ ଶବଦ ତହିଁ ବଢ଼ିଥିବ ଏପରିରେ । ୩୯ ।

ସଖେ ସାକ୍ଷାଦାମୋଦରବଦନଚନ୍ଦ୍ରାବକଳନଂ
ସ୍ଫୁରଦ୍ଭୂପ୍ରେମାନନ୍ଦପ୍ରକରଲହରୀଚୁମ୍ବିତଧିୟଃ ।
ମୁହୁସ୍ତନ୍ନାଭୀଶ୍ରୀସମୁଦୟୃଶିଶ୍ଚେନ୍ୟସ୍ତପଦ-
ସ୍ତବାଙ୍ଗ୍ରୀଶ୍ଲେଷାନନ୍ଦଂ ଦଦଧତୁ ପୁରଃ ପୌରବନିତାଃ । ୪୦ ।

ହେ ହଂସ ମଦନମୋହନବଦନଚନ୍ଦ୍ର ଦରଶନ କରି ।
ଯାହାଙ୍କ ବୁଦ୍ଧିରେ ଲାଗୁଥିବ ଶରେ ପ୍ରେମଆନନ୍ଦଲହରୀ ।
ଶିରେ ଗୋପୀଙ୍କର ଚରଣଙ୍କର ଦେଇ ଆନନ୍ଦରେ ଥିବେ ।
ସେ ମଥୁରାନାରୀ ଦେଖନ୍ତେ ତୁମ୍ଭର ନେତ୍ରସୁଖ ବଢ଼ାଇବେ । ୪୦ ।

ଅଥ କ୍ରାନ୍ତଂ କ୍ରାନ୍ତଂ କ୍ରମଘଟନୟା ସଙ୍କଟତୟା
ନିବାସାନ୍ ବୃଷ୍ଣୀନାମନୁସର ପୁରୀମଧ୍ୟବସିତାଂ ।
ମୁଖଦ୍ୱାରେ ଯତ୍ର ସ୍ଫଟିକଘଟନାଭିର୍ବିଜୟତେ
ପତାକାଭିଃ ସନ୍ଦୀପିତବଦନମନ୍ତଃପୁରବରଂ । ୪୧ ।

ଯାହିଁ କ୍ରମଶରେ ରଚନା ବଙ୍କେଲେ ଅତି ସଂକଟରେ ଯୁତ ।
ବୃଷ୍ଣିମାନଙ୍କର ଭବନଜାତର ଦେଖିଲାପରେ ତୁରତ ।
ଯାହିଁ ମୁଖଦ୍ୱାର ଚହ୍ଲବା ମନ୍ଦର ଲୋଚନ ହରଷ ତୋଷେ ।
ପତାକାଜାଳର ବେଢି ଅନ୍ତଃପୁର ପ୍ରକାଶରେ ଯହିଁ ଦଶେ । ୪୧ ।

ଯଦୁତ୍ସଙ୍ଗେ ଭୃଙ୍ଗସ୍ଫଟିକରଚିତାଃ ସନ୍ତି ପରିତୋ
ମରାଳା ମାଣିକ୍ୟପ୍ରକରଘଟିତକ୍ରୋଡ଼ଚରଣାଃ ।
ସୁହୃଦ୍‌ବୁଦ୍ଧ୍ୟା ହଂସଃ କଳିତମଥୁରାସ୍ୟାମ୍ବୁଜଭୁବଃ
ସପର୍ଯ୍ୟାଦୀଂ ଯେଷାଂ ସପଦି ପରିଚର୍ଯ୍ୟାଂ ବିଦଧତି । ୪୨ ।

ହେ ହଂସ ଶ୍ରୀହରି ସଦନ ଉପରିଭାଗେ ଛନ୍ତି ସ୍ଫଟିକରେ ।
ମରାଳ ଅନେକ ତାଙ୍କ ପାଦମୁଖ ହୋଇଅଛି ମାଣିକ୍ୟରେ ।
ଅନ୍ୟ ହଂସମାନେ ଦେଖି ତାହା ମନେ ମଥୁରାରୁ ଆସିଥିବା ।
ଉଧାତ ବାନ୍ଧବ ମଣି ସଜମାନଙ୍କୁବରେ କରନ୍ତି ସେବା । ୪୨ ।

ତଦନ୍ୱେଷ୍ୟନ୍ତୀନାଂ ପଶୁପରମଣୀନାମପି କୁଲୈ-
ରଲବ୍ଧଂ କାଳିନ୍ଦୀପୁଲିନବିପିନେ ଲୀନମନିଶଃ ।
ସଦାଲୋକୈର୍ଲକ୍ଷ୍ୟସ୍ତୁତପରିଚିତାସ୍ୟଂ ସହଚର
ସ୍ଫୁରନ୍ତଂ ବୀକ୍ଷେଥା ପୁନରପି କିମଗ୍ରେ ମୁକୁନ୍ଦଂ । ୪୩ ।

ଯାହାଙ୍କୁ ସତତ ଗୋପୀଙ୍କର ଚିତ୍ତ ଖୋଜୁଅଛି ଅଭୀତରେ ।
ଯେ କାଳିନ୍ଦୀତଟରେ ବିପିନମଧ୍ୟରେ ରହୁଥାନ୍ତି ଆମୋଦରେ ।
ସନ୍ତତ ଜଗତପୂଜ୍ୟଜ୍ଞାତସ୍ମିତ ବଦନେ ପ୍ରକାଶ ଯାର ।
ଦେଖ ସହଚର ସେହି ଏ ମୁରାରି ଦିଶନ୍ତି କି ଆଗେ ତୋର । ୪୩ ।

ବିଷାଦଂ ମାକାର୍ଷୀର୍ଦ୍ରୁତମଥବ୍ୟାକୁଳତରଶୌ

ସମାସନ୍ନା ସଖେ ଧୃତନବକିଶଣ୍ଡସ୍ତବ ସଖା ।
ଲତାଂ ବ୍ରୂତେ ଯସ୍ୟାଂଶୁକତତିଧୃନଚିଦ୍ରାନ୍ତକବ୍ରତେ
ସଦାଭୀସବୃନ୍ଦୈରୁପଧୃତମଭୁଦ୍ଦ୍ୱନ୍ଦ୍ୱବଦରେ । ୪୪ ।

ବିଷାଦ ନ କର ସଖେ ବୃଥାଗଲ ଏପରୁ ନ ବୋଲ ହେବେ ।
ଆସିବେଟି ସ୍ୱଣ୍ଡ ନବୀନକିଶଣ୍ଡମଣ୍ଡନ ବ ଲୁହ ଏବେ ।
ଏପ୍ରରରେ ଯହିଁ କହୁଥିବ ରହି ଗୋପୀଏ ଉଦ୍ଧବହସ୍ତେ ।
ଦେଇଥିବା ହୁର ଶୁକ ଅଛି ସେହି କୃଷ୍ଣଦାସ ଜାଣ ଚତ୍ତେ । ୪୪ ।

ଘନଶ୍ୟାମାଭ୍ରାମ୍ୟଦ୍ଭ୍ରୂ୍ୟପର ହର୍ମ୍ୟସ୍ୟ ଶିଖିଭ
ବୃତସ୍ତୋତ୍ରା ମୂର୍ଦ୍ଧ୍ନି ରଗୁରୁରଚିତା ଧୂମଲଘଟା ।
ତଦାଲୋକାଦ୍ଧୀର ସ୍ଫୁରତ ତବ ଚେତ୍ତାନସ ରୁଚି
ର୍ଜିତଂ ତର୍ହି ସ୍ୱୈରଂ ଜଳସଦନବାସପ୍ରସୃତସ୍ୟ । ୪୫ ।

ଭ୍ରମେ ଘନଶ୍ୟାମ ଅଗୁରୁର ଧୂମପାଳା ହର ହର୍ମ୍ୟପରେ ।
ମୃଗ୍ଧ ଶିଖିଗଣ ଦେଖି ମଣେଘନ ରଚନ୍ତି ପ୍ରାର୍ଥନାଗିରେ ।
ହେ ଚତୁର ହଂସ ତୁମ୍ଭର ମାନସ ରୁଚିରତା ଦେଖି ତାକୁ ।
ବଢ଼ିବଟି ଯେବେ ପ୍ରଶଂସିବେ ତେବେ ତୁମ୍ଭ ଜଳପ୍ରେୟସୀତାକୁ । ୪୫ ।

ତତୋ ମଧ୍ୟେ କକ୍ଷଂ ପ୍ରଣୟନବଗବାକ୍ଷସ୍ତବକିନଂ
ଚଳନ୍ନ୍କ୍ରାଲମ୍ବଷ୍ଠ ଭ୍ରତମମଳସ୍ତମ୍ଭନବନ୍ତଂ
ଭବାନ୍ ଦ୍ରଷ୍ଟା ହେମୋଲ୍ଲିଖିତ ଦଶମସ୍କନ୍ଧ ଚରତୋ-
ଲ୍ଲସଦ୍ଭିତ୍ତିବ୍ରାନ୍ତଂ ମୁରହରଜୟିନଃ କେଳିନିଳୟଂ । ୪୬ ।

ହେ ହଂସ ଶ୍ରୀଧର ସଦନ ମଧ୍ୟର ବାତାୟନରେ ମଣ୍ଡିତ ।
ମୁକୁତାର ଗୁଚ୍ଛ ହୋଇବାରୁ ସ୍ୱଚ୍ଛ ଦିଶୁଥିବ ସ୍ତମ୍ଭବ୍ରାତ ।
ଦେଖିବ ନେତ୍ରରେ ପ୍ରାଚୀର କାନ୍ଥରେ ଦଶମସ୍କନ୍ଧବିଷୟ ।
ସୁବର୍ଣ୍ଣେ ଚିତ୍ରିତ ହୋଇଥିବ ସେତ ଜାଣ କୃଷ୍ଣକେଳିଗୃହ । ୪୬ ।

ଅଲିନ୍ଦେ ଯସ୍ୟାସ୍ତେ ମରକତମୟୀ ଯଷ୍ଟିରମଳା
ଷଡ୍ଯୁକ୍ତୁର୍ଯାଂ ସକ୍ତୌ ମଦକଳକଳାପୀ କଳୟତି ।

ନଖଚନ୍ଦ୍ରସ୍ୟାଃ ଶିଖରମଧିରୁହ୍ୟ କ୍ଷମନ୍ଦଂ
ପ୍ରତୀକ୍ଷେଥା ଭ୍ରାତର୍ବଦନମବସରଂ ଯାଦବପତେଃ । ୪୭ ।

ଅହେ ଭ୍ରାତ ହଂସ ମୋହନନବାସ ବାହାରଦ୍ୱାର ଘାଟରେ ।
ମଦରଚସ୍ତମ୍ଭ ଅଛୁ ଚହିଁ ଶୁଭ ଉଦ୍ୟାନସେ ରଜନୀରେ ।
ସୁପଥୁର ସ୍ୱନକାଶ୍ରି ନିକ୍ଷିପଣ ଆଶ୍ରୟ ଉଅନ୍ତୁ ବନ୍ଧୁ ।
ଛଡ଼ ତୁମ୍ଭେ ଚହିଁ ବସି ସୁଖୀ ହୋଇ କୃଷ୍ଣ-ଅବସର ଗୃହେଁ । ୪୭ ।

ଉବଷ୍ଟଃ ପଲ୍ୟଙ୍କେ ମୃଦୁଲତରତୂଲୀଧବଳତେ
ଝିଲ୍ଲୀଙ୍କାଲକ୍ଷ୍ମୀକାଂ ଚକ୍ରୁଦ ଦରସାଚୀକୃତତନୁଃ ।
ଅମନ୍ଦଂ ପୂର୍ଣ୍ଣେନ୍ଦୁପ୍ରତିମମୁପଧାନଂ ପ୍ରମୁଦିତୋ
ଉଧାୟୃସ୍ତେ ତସ୍ମିନ୍ ପଦ୍ମତପୋଦ୍ୱିଯୁବରଃ । ୪୮ ।

ସୁକୋମଲ ଶ୍ୱେତ ସକଳଜଳଦ ଶୋଭନୀୟ ତୁଳକାରେ ।
ମଣ୍ଡିତ ପଲଙ୍କେ ଥିବେ ସେ କୃଷ୍ଣ ଉଷେତେ ବଙ୍କିମାକାରେ ।
ଅମନ୍ଦ ସମ୍ପୂର୍ଣ୍ଣଚନ୍ଦ୍ରମା ସମାନ ଉପାଧାନ ଅଙ୍ଗେ ଥୋଇ ।
କନ୍ଧେ ଦୁହିଙ୍କି ତହିଁ ପରେ ରଖିଥିବେ ପ୍ରମୋଦକୁ ବହି । ୪୮ ।

ଝଦଷ୍ଟଦୂକାଳନୀଲସଲିଲପ୍ରଭଗଂ ଭ୍ରୂକରୁଚଃ
କପୋଲାନ୍ତଃ ପ୍ରେଙ୍ଖନ୍ମଣିମକରମୁଦ୍ରାମଧୁରମା ।
ବସାନଃ କୌଶେୟଂ କଚବନକଲକ୍ଷ୍ମୀପରିମଳଂ
ମୁକୁନ୍ଦସ୍ତେ ସାକ୍ଷାତ୍ପ୍ରପଦସୁଧୟା ସେକ୍ଷ୍ୟତି ଦୃଶୌ । ୪୯ ।

ମକରକୁଣ୍ଡଳ ତେଜ ଗଣ୍ଡସ୍ଥଳ ପ୍ରଭବମ୍ଭେ ଯମୁନା ।
ଉତଳତଦନ ସ୍ୱନରମା ଘୁଣ କର ଦେଉଅଛୁ ମନା ।
କନକବସନ ଛବ ସୁବସନ କଟିତଟେ ଶୋଭା ପାଏ ।
ଏମନ୍ତ ଶ୍ରୀକାନ୍ତ ଦରଶନାମୃତ ପାଇବେ ନୟନ ଦୁହେଁ । ୪୯ ।

ହଦନ୍ତୁଃ ପୌଷ୍ଣୀରଖିଲକୁଲବୃଦ୍ଧୋ ଯଦୁପତେ-
ରଦୂଷ୍ୱଦାସୀନୋ ମଧୁରବଣିତାର୍ଗାସ୍ୟତି ସଦା ।
ପୁରସ୍ତାଦାଭୀଷ୍ମିଗଣବନ୍ଦ୍ୟନାମା ସ କଠିନୋ

ମଣିସ୍ତମ୍ଭାଲମ୍ବୀ ଗୁରୁକୁଳକଥାଂ ସଙ୍କଳୟିତା । ୫୦ ।

ସର୍ବକୁଳବୃଦ୍ଧ ବିକଦ୍ରୁ ପ୍ରଉଢ଼ ଶ୍ରୀକୃଷ୍ଣ ନିକଟେ ବସି ।
ପୁରାଣ ବଂଶସ୍ଥ ପୁଣ୍ୟଚରିତ୍ର କଥା କହୁଥିବେ ରହି ।
ପୂର୍ବରୁ ଗୋପୀଙ୍କ ବପୁସରଜକ କଠିନ ମତି ଅକ୍ରୂର ।
ଆଉଜ ସେ ମଣିସ୍ତମ୍ଭକୁ ଯେ ବାଣୀ କହୁଥିବେ କୁରୁବର । ୫୦ ।

ଦ୍ବୈଶ୍ବାଣାମୁତ୍ତଂସଃ କଳିତକୃତବର୍ମାପ୍ୟଭିୟୁତଃ
ପ୍ରଣେଷ୍ୟେତେ ବାଲବ୍ୟଜନୟୁଗଳାନ୍ଦୋଳନବିଧିଂ ।
ସଜାନୁଭ୍ୟାମଷ୍ଟାପଦଭୁବମବଷ୍ଟଭ୍ୟ ଭବତା
ଗୁରୋସ୍ତେ ଶିଷ୍ୟୋ ନୂନଂ ପଦକମଲ ସମ୍ବାହନରତଃ । ୫୧ ।

ଯଦୁକୁଳଶ୍ରେଷ୍ଠ ସାତ୍ୟକ ଯେ କୃତବର୍ମା ଏ ଦୁହେଁ ଶ୍ରମର ।
ଶ୍ରୀ କୃଷ୍ଣର ଦୁଇ ପାର୍ଶ୍ବରେ ରହି ଚାଳୁଥିବେ ଚାମର ।
ସୁବର୍ଣ୍ଣନିର୍ମିତ ପୀଠେ କରି ସ୍ଥିତ ସ୍ବଜାନୁ ତା ପରେ ଥୋଇ ।
ଶ୍ରୀହରିପଦ୍ମର ଉଦ୍ଧବ ଶିଷ୍ୟର ପ୍ରାପ୍ତେ ସେବୁଥିବେ ରହି । ୫୧ ।

ତଦଙ୍ଗେନ୍ଦ୍ରୋ ଯୁକ୍ତୀକୃତକରସରୋଜୋ ଭୁବ ପୁରଃ
କୃତାସଙ୍ଗୋ ଲଗ୍ନା ପ୍ରଜବନନନ୍ଦେଶେଽର୍ପିତମନାଃ ।
ଛଦଦ୍ବନ୍ଦ୍ବେ ଯସ୍ୟ ଧ୍ବଜପଟ ମଧୂସ୍ବାଦିବିଟବୋ
ବ୍ୟଦସ୍ୟନ୍ତେ ସାମାସ୍ବଜଜନିତ ମନ୍ୟୋଽନ୍ୟକଲହଂ । ୫୨ ।

ଗରୁଡ଼ ଯେ ଦୁଇ କର ଯୋଡ଼ି ତହିଁ କୃଷ୍ଣଆଗେ ରହୁଥିବେ ।
ଯେତେବେଳେ ଆଜ୍ଞା ଦେବେ ସେ ଅଦେଶେ ତାହା କରିବାକୁ ଜବେ ।
ଯେତେବେଳେ ଦଣ୍ଡ ଅଦେଶରେ ପକ୍ଷୀ ଉଡ଼ିଯିବେ ଗଗନରେ ।
ବଢ଼ିଏ ସେ ଶବ୍ଦ ବାଦ ସାମବେଦ କରିବା ଭୁଲିବେ ଘରେ । ୫୨ ।

ନ ଜର୍ବନ୍ତୁଂ ଦାମୋଦରପଦକଜସ୍ତାଙ୍ଗୁଳନଣ-
ଦ୍ୟୁତୀନାଂ ଲାବଣ୍ୟଂ ଭବତି ଚତୁରସ୍ୟୋଽପି ଚତୁରଃ ।
ତଥାପି ସ୍ଥୀପ୍ରଜ୍ଞା ପୁଲକବତରଲଦ୍ଭାବଦମସୌ
ପ୍ରବୃତ୍ତ ତନ୍ଦୁର୍ତ୍ତିଂ ସ୍ତବକତି ମହାସାହସବଶେ । ୫୩ ।

ସେହୁ ପରତନ୍ତ୍ର ତାଣେ ଅଙ୍ଗୁଠିର ନଖ-ଶୋଭାବର୍ଣ୍ଣନରେ ।
ନୋହିଲେ ସମର୍ଥ ଯେ ଚତୁରମାଥ ଚତୁର ହୋଇ ବେଦରେ ।
ତେବେ ନାସ୍ତିବୁଦ୍ଧି ଚଞ୍ଚଳ ପ୍ରକୃତି ଥିବାରୁ ମୁଁ ଅନ୍ଧ ହଂସ ।
ସେ ଶୋଭାସମୂହର ବର୍ଣ୍ଣିବାକୁ ମତ ବଳାଇ କରେ ସାହସ । ୫୩ ।

ନଖଚନ୍ଦ୍ରେ ଯସ୍ୟ ବ୍ରଜଶିଶୁକୁଲସ୍ତ୍ରୈଣବହଳ-
ସ୍ଫୁରଚ୍ଚୂଡ଼ାଗ୍ରୈର୍ଲ୍ଲୁଳିତଶିଖସ୍ୟଃ ପାଦନଖସ୍ୟଃ ।
କ୍ଷଣଂ ଯାନାଲୋକ୍ୟ ପ୍ରକଟପରମାନନ୍ଦବିବଶଃ
ସ ଦେବର୍ଷିର୍ମ୍ମୁକ୍ତାନପି ତନୂଭୃତଃ ଶୋଚତି ଭୃଶଂ । ୫୪ ।

ବ୍ରଜ ଶିଶୁଗଣ ବତ୍ସାଙ୍କୁ ହରଣ କରି ଧାତା ଭୟ ପାଇ ।
ଶ୍ରୀକୃଷ୍ଣ ପଦ୍ମରତଳେ ନିଜ ଶିର ଲଗାନ୍ତେ ଭକ୍ତିରେ ଯାଇଁ ।
ବ୍ରହ୍ମା-ଚୂଡ଼ାଗ୍ରରେ ପାଦନଖ ସ୍ଫୁରେ କୃଷ୍ଣର ନାରଦ ଦେଖି ।
ଅନନ୍ତ ମନେ ମୁକ୍ତ ଦେହୀ ଜନେ ଚିନ୍ତା ହେଲେ ମହାସୁଖୀ । ୫୫ ।

ସରୋଜାନାଂ ବ୍ୟୂହଃ ଶ୍ରିୟମଭିଲଷନ୍ ଯସ୍ୟ ପଦୟୋ-
ର୍ଯ୍ୟଯୌ ସ୍ୱଗାହ୍ୟାନାଂ ହୃଧୂରନୂଦବାସ-ବ୍ରତବିଧିଂ ।
ତ୍ୱମଂ ବନ୍ଦେ ନୀତୈରନୁଚରବିଧାବଦ୍ୟସନନାଂ
ଯଦେଷାଂ ପ୍ରଣାମଂ ଦମନମନୁବର୍ତ୍ତଂ ପ୍ରଣୟତୁ । ୫୬ ।

ହେ ହଂସ ଶ୍ରୀହରି ଚରଣର ଶୋଭା ନେଇଣ ପଙ୍କଜମାନେ ।
ବୁଡ଼ି ହୋଇ ଯାଇ ଜଳମଧ୍ୟେ ରହି ଅଛନ୍ତି ରଜନୀ ଦିନେ ।
ତୁମକୁ ବନ୍ଦନ କରଇ ସେ ଧନ୍ୟ ଜାଣି ଅନୁଚର ଶ୍ରୀଭ ।
ତବେ ସେ ହଂସ ପଙ୍କଜରେ ବଶ ବଯର ବସବ ପ୍ରଭ । ୫୭ ।

ଲୁଠ୍ଳାମୁଲ୍ଲାସୈର୍ଦ୍ଦିବକରମୟୂଖଲକଦଳୀ-
କଦମ୍ବାଡମ୍ବାରଂ ତବଲୟତି ଯସ୍ୟୋରୁଯୁଗଳଂ ।
ଯଦାଲାନସ୍ତମ୍ଭପ୍ରଥମବଲଲମ୍ବେ ବଲବତାଂ
ବଲାଦୁଦ୍ଧାମାନଂ ପଶୁପରମଣୀଚିତ୍ତକରଣାଂ । ୫୮ ।

ଶ୍ରୀ ଯୋବନ ଉରୁ ହରିଙ୍କୁ ଯେ ଗୁରୁ ମରକତ କଦଳୀର

ସ୍ନ୍ଦ ମରବ କରୁଚ ଖଗବର ଯେଉଁ ଜଳ ଶୋଭାକାର ।
ଯେଉଁ ଉରୁକାନ୍ତି ଉନ୍ନତ ପ୍ରଚଣ୍ଡ ଗୋପୀଙ୍କ ମାନସ ହନ୍ତୀ ।
କନକର ସ୍ତମ୍ଭ ହୋଇଛନ୍ତି ଜାଣିବ ଦେଖି ଅହେ ବାରଗଢ଼ । ୨୭ ।

ସଖେ ଯସ୍ୟାସ୍ତାମ୍ୟନ୍ନୟନଶଫରଶ୍ରେଣୀବନବଧୌ
ନଦୀନାଂ ଗାମ୍ଭୀର୍ଯ୍ୟପ୍ରସରକଳିତା ନାଭିସରସୀ ।
ଯତଃ କଳ୍ପାସ୍ୟାଦୌ ସକଳଜନକୋତ୍ପତ୍ତିରଭବତ୍ ।
ଗଭୀରାନ୍ତଃକକ୍ଷାଧୃତଭୁବନସମ୍ମୋହୁଦମଭୂତ୍ । ୨୭ ।

ହେ ହଂସ କୃଷ୍ଣର ନାଭିସରୋବର ଗୋପୀଙ୍କ ନୟନ ମୀନ ।
ଜୀବନ ରକ୍ଷାର ନିଦାନ ତହିଁର ଶୁଣ ଅନ୍ୟ ଗୁଣମାନ ।
ଜଗତର ତାତ ବଢ଼ିବୀ ଯହାର କମଳ ଏକ ଜନମ ।
ସେ ନାଭିରୁ-ହୋଇ ଧାତା ପୁଣି ତହିଁ ସମ୍ଭୂତ ହେଲେ ଜାଣିମ ।୨୭।

ହ୍ରୀଢଂ ଧତ୍ତେ ଯସ୍ୟ ତ୍ରିବଳୀଲଚକାସଙ୍କଟତଳଂ ।
ସଖେ ଦାମଶ୍ରେଣୀଘପଣରଚନାଭଙ୍କମୁଦରଂ ।
ଯଶୋଦା ଯସ୍ୟାନ୍ତଃ ପୁଲକରଭୁଜଙ୍ଗୈଃ ପରବୃତଂ ।
ମୁଖଦ୍ୱାରା ବାରଦ୍ୱୟମବଲୁଲୋକ ତ୍ରିଭୁବନଂ । ୨୮ ।

ହରିର ଉଦର ଶୋଭା ମନୋହର କଟିହ୍ରାଦ ଥିବାର ।
ଥିବାରୁ ତ୍ରିବଳୀ ତହିଁରେ ଯେ କଳ ନୁହଇ ତା ସମାନର ।
ଯଶୋଦା ଯହିଁରେ ବଦନ ହୁଅରେ ଦେଖିଛନ୍ତି ଦୁଇଥର ।
ଜାଗ ନର ଲେଖ ସହ ଧନଲୋକ ଅହେ ହଂସ ହେଉଛର । ୨୮ ।

ଉରୋ ଯସ୍ୟ ସ୍ଥାମଂ ସ୍ଫୁରଘ ବନମାଳା ବଲୟିତଂ
ହଟନ୍ତ୍ୱାନଂ ତନ୍ତ୍ରୀ ଜନମନସି ସଦ୍ୟୋ ମନହିଜଂ ।
ମଣୀଚଭର୍ଦ୍ଦ୍ୱିନ୍ଦ୍ରବଳବଦଭୁଲ୍ୟୋଽପି ବହତେ
ସଦା ଖଦ୍ୟୋତାଙ୍କଂ ଭୁବନମଟୁରଃ କୌସ୍ତୁଭମଣିଃ । ୨୯ ।

ହଂସ ଯାହାଙ୍କର ବସ୍ତ୍ରାରତ ଉର ବନମାଲାରେ ମଣ୍ଡିତ ।
ଯାହା ଦରଶନେ ଗୋପୀଙ୍କର ମନେ ମଦନ ହୋଏ ବର୍ଦ୍ଧିତ ।

ବକ୍ଷତଳ ଉପରେ ପଦ୍ମଭବ 'କୌସ୍ତୁଭ' ମଣି ଯହିଁ ।
ଭୁବନ ବାନ୍ଧିବ ହୋଇ ସେ ଶନୈଶ୍ଚରଗ୍ରହଙ୍କୁ ଅଛଇ ବହି । ୩୯ ।

ସମନ୍ତାଦୁନ୍ମୀଲଦ୍ଧ୍ୱଜଭୁଜଗଳସ୍ତମ୍ଭଯୁଗଳଂ
ପ୍ରଭାଭିର୍ନିର୍ଦ୍ୱିଜଦଳିତ କେୟୂର ଲଳିତଂ ।
ମଦକ୍ଲାନ୍ତ୍ୟଦ୍‌ଗୋପୀପଟଳଦୃଢକଣ୍ଠଗ୍ରହପରଂ
ଭୁଜଦ୍ୱନ୍ଦ୍ୱଂ ଯସ୍ୟ ସ୍ଫୁଟସ୍ଫୁରଦ୍‌ଗର୍ବଂ ବିଜୟତେ । ୪୦ ।

ଯାର ମାଳମଣି ସ୍ତମ୍ଭଯୁଗ ଠାଣି ଜିଣି କଙ୍କଣମଣ୍ଡିତ ।
ହୋଇ ବେଣୀଦୈତ୍ୟ ଜୀବନର ଅନ୍ତ କରିଛି ତାଙ୍କର ହସ୍ତ ।
ଉନମତ୍ତ ଗୋପୀମାନଙ୍କର ପୁଣି କଣ୍ଠ ଅଲିଙ୍ଗନକାମ୍ଭ ।
ବାସ କସ୍ତୁରୀର ହୁଅଇ ପ୍ରସର ଯହିଁ ଶ୍ୟାମ ହୋଇକରି । ୪୦ ।

ଛଟାଭେ ସାନ୍ଦ୍ରାଭଂ ଜଗଦ ନବଲାବଣ୍ୟଲହରୀ-
ପରୀପାକସ୍ୟାନ୍ତର୍ଦ୍ଧୃତମଦନାବେଶମଧୁରଂ ।
ନଟଦ୍ଭ୍ରୂବଲ୍ଲୀକଂ ସ୍ମିତନବସୁଧାକେଳିସଦନଂ
ସ୍ଫୁରନ୍ମୁକ୍ତାପଙ୍କ୍ତି ପ୍ରଥମଦବଦନଂ ଯସ୍ୟ ବଦନଂ । ୪୧ ।

ହେ ହଂସ ଜଗତଜନେ ସୁଦୃଶ୍ୟାତ ହେଉ ଲାବଣ୍ୟଲହରୀ-
ମଧ୍ୟେ ପରକାଶ ଯହିଁ ମନ୍ଦହାସ ନବସୁଧାଥାଇ ପୂର୍ଣ୍ଣ ।
ଭ୍ରୂଲତା ନୃତ୍ୟ କରେ ଯହିଁ ଦନ୍ତ ମୁକ୍ତାପନ୍ତି ଜନଇ ।
ସେ ଶ୍ୟାମବଦନ କଲେ ଦରଶନ ଧନ୍ୟ ହେବ ନେତ୍ର ଦୁଇ । ୪୧ ।

ତମେଭିର୍ବ୍ୟାହାରୈଃ କଲୟ କଥୟାମି ସ୍ଫୁଟମଦଂ
ଷଣ୍ଢେ ନଃସନ୍ଦେହଂ ପଶୁଚୟପଦଂ କେବଳମିଦଂ ।
ପରସ୍ନନ୍ଦୋ ଯନ୍ନିମ୍ନପୃନପଦବୀ ଭ୍ରାନ୍ତି ଭବତା ।
ଉପାସ୍ୟ ବଷ୍ଣାତତୋ ମଧୁରବବ ସୋଽସ୍ମ୍ୟଂ ମଧୁପୁରଂ । ୪୨ ।

ହେ ମଧୁରସ୍ୱନ ଏପରି ବଚନ ଅନେକରେ ଅଛି ଦୋଷ ।
କେବଳ ତାହାଙ୍କୁ ତୁମ୍ଭେ ଚିହ୍ନିବାକୁ କହିଲି ଏ ସବୁ ଗୁଣ ।
କହେ ଯାହା ଶୁଣ ଯାହାଙ୍କୁ ଦର୍ଶନ କଲମାତ୍ରେ ତୁମ୍ଭ ଚରୁ ।

ପରମ ଆନନ୍ଦ ଲଭିବ ସେ ନନ୍ଦନନ୍ଦନ ଜାଣିବ ତଥ୍ୟ । ୬୨ ।

ହୃଲ୍ଲେଖେଥାଃ କୃଷ୍ଣଂ ମଦକଳମରାଳୀରତକଳା-
ବଦ୍ଗତ୍ୱଦ୍ୱ୍ୟାମୁଷ୍ଟଂ ଯଦ ପୁରବଧୂବକ୍ତ୍ରମଦିରୈଃ ।
ତଦା ନାସ୍ମାନ୍ ଗ୍ରାମ୍ୟାଃ ଶ୍ରବଣପଦବୀଂ ତସ୍ୟ ଗମୟେଃ
ସୁଧାପୂର୍ଣ୍ଣଂ ଚେତଃ କଥମପି ନ ତକ୍ରଂ ମୃଗୟତେ । ୬୩ ।

ହେ ହଂସ ଦେଖିବ ଯେବେ ସେ ମାଧବ ମଧୁପୁରନାରୀଙ୍କର ।
ସଙ୍ଗେ ମତ୍ତ ହୋଇ ଥିବେ ପ୍ରେମେ ତହୁଁ ନ କହିବ ଆମ୍ଭ ଟିର ।
ଯେହେତୁ ଅମୃତ ସ୍ୱାଦୁରେ ଯା ଚିତ୍ତ ପୂର୍ଣ୍ଣ ହୋଇଥାଏ ତାର ।
ଘୋଳଦହି ପାଇଁ ଶ୍ରଦ୍ଧା ତ ନୁହଇ ଅମ୍ଳ ମଧୁରହର । ୬୩ ।

ଯଦା ବୃନ୍ଦାରଣ୍ୟସ୍ମରଣଲହରୀହେତୁରମଣଂ
ପିକାନାଂ ବେବେଷ୍ଟି ପ୍ରଚ୍ଛଦଶତମୂର୍ଚ୍ଛୈଃ କୁହୁରୁତଂ ।
ବହନ୍ତେ ବା ବାତାଃ ସ୍ଫୁରତି ଗିରମଲ୍ଲୀପରିମଳ-
ସ୍ତଦୈବାସ୍ମାକୀନାଂ ଗିରମୁପହରେଥା ମୁରଭିଦ । ୬୪ ।

ହେ ହଂସ ଆମ୍ଭର ଦୁଃଖ କହିବାର ସମୟ କହୁଛି ଶୁଣ ।
ବୃନ୍ଦାବନ ଗୁଣ କହଏ ସ୍ମରଣ ଯେଉଁ ପିକଗଣ ସ୍ୱନ ।
ଗିରିଅନ୍ତେ ସେହି ରବ ହୋଇ ତହୁଁ ମଲ୍ଲୀଗନ୍ଧ ଘେନ ବାତ ।
ବହିବା ସମୟ ଦେଖି କୃଷ୍ଣେ କହ ଆମ୍ଭମାନଙ୍କ ଭାରତ । ୬୪ ।

ପରିତ୍ୟକ୍ତୁନ୍ ଗୋଷ୍ଠାନ୍ନିଖିଳଜନମଣାଭ୍ୟଃ ପ୍ରିୟତଯା
ଭବାନ୍ ଯସ୍ୟା ଗୋପୀରମଣ ହୃଦଧେ ଗୌରବଭରଂ ।
ସଖୀ ତସ୍ୟା ବନ୍ଧାପଯୁକ୍ତ ଲଳିତା ଧୀରଲଳିତା
ପ୍ରଣମ୍ୟ ଶ୍ରୀପାଦାମ୍ବୁଜକନକପୀଠୋପରିଷରେ । ୬୫ ।

ହେ ହଂସ ଶ୍ରୀହରି ଘୋଷଗୋଷ୍ଠରୁ ଫେରି ଆସେ ଗୋପୀମାନଙ୍କର ।
ମଧ୍ୟରେ ଯାହାର କରନ୍ତି ଆଦର ହୋଇ ଅତି ପ୍ରେମଭର ।
ସଜନୀ ତାହାର ଲଳିତା ତୁମ୍ଭର ପାଦପଙ୍କଜରତନ ।
ପୀଠଅନ୍ତେ ଦଣ୍ଡବତ କରି ଶୁଣ କରୁଅଛି ନିବେଦନ । ୬୫ ।

ପ୍ରସହ୍ୟାବାଲ୍ୟଂ ନବକମଳିନୀପଲ୍ଲବକୁଳେ-
ସ୍ତନ୍ୟସ୍ୟ ଭୁଯ୍ୟୌ ଯସ୍ୟାଃ କୁଚମଦନ ସମର୍ଦ୍ଦନମଭୂତ୍ ।
ତ୍ୱଦ୍ଦୃଗ୍ଗୋତ୍କଣ୍ଠୀ ରଣପରମାକ୍ରନ୍ଦନସନା
ବଭୂବ ପ୍ରଶ୍ନୌଘ୍ନି ସ୍ମରମଥନ ଶେଷଂ କପିଳକା । ୬୬ ।

ଜହୁଦ ହେ ହଂସ ବାଳକ ବୟସ ସମୟରୁ ପଙ୍କଜର ।
ନୂତନପତର ବସାଇ ଆହାର ପୁଣି ପୁଡି ସନ୍ତୋଷର ।
ରଖିଥିଲ ପୋଷେ ଯାକୁ ସ୍ତନଂ ବଶେ ସେହି କପିଳକା ଧେନୁ ।
ଗୃଳ ସ୍ତନଭରେ ନ ପାରେ ପିଠେରେ ଶ୍ୱାସ ବହେ ଶୁଣ ତାତ୍ତୁ ।୬୬।

ସମୀପେ ନୀପାନାଂ ତ୍ରିଚତୁରଦଳା ହସ୍ତସହିତା
ଭୃଯ୍ୟା ଯା ମାଧବପ୍ରିୟସହଚରୀ ସ୍ୱବନଯୃତାଃ ।
ଇୟଂ ସା ବାସନ୍ତୀ ଗଳଦମଳମାଧ୍ୱୀକପଟଳୀ
ମିଷାଦସ୍ତ୍ରେ ଗୋପୀରମଣ ରୁଦତୀ ଖେଦପୃଥ ନଃ । ୬୭ ।

ଜହୁଦ କାଦମ୍ବ ହେ ହର କଦମ୍ବନ ପାଶେ ବାସନ୍ତୀର ।
ଥିଲା ଯେଉଁ ଲତା ଛନ୍ନ ଗୃହଷ୍ଟ ତା ପଲ୍ଲବ ହୋଇମାତର ।
ଏବେ ତୃତପ୍ରିୟ ସହଚରୀ ସ୍ନେହ ବହୁ ମଡଭନ୍ନ ଛଡ଼ିଲେ ।
ଗୋପୀଙ୍କର ଦୁଃଖ ଦେଖି କରେ ଶୋକ ଚନ୍ଦ୍ର ଏ ପୁଣି ସକଳେ ।୬୭

ପ୍ରସୂତୋ ଦେବକ୍ୟା ମଧୁମଥନ ଯଃ କୋଽପି ପୁରୁଷଃ
ସ ଯତୋ ଗୋପାଲାଭ୍ୟୁଦୟପରନନ୍ଦନବସନ୍ତଂ ।
ଧୃତୋ ଯୋ ଗାନ୍ଧିନ୍ୟାଃ କଠିନଜଠରେ ସମ୍ଭୃତ ତତଃ
ସମନ୍ତାଦେବାସ୍ତଂ ନିବସିବ ଗତା ଗୋକୁଳକଥା । ୬୮ ।

ଦେବକୀର ଗର୍ଭମଧ୍ୟରୁ ସମ୍ଭବ ହୋଇଲେଟି ଯେଉଁ ପୁରୁଷ ।
ଗୋପାଳଙ୍କ ଶୁଭ କର୍ତ୍ତା ସେ ଧବ ବୃନ୍ଦାବନେ କଲେ ବାସ ।
ଗାନ୍ଧିନୀ କଠିନପେଟୁଁ ଯେ ଜନମ ଅକ୍ରୂର ଏ ଗୋପସୁଖ ।
ଘେନଗଲା କୃଷ୍ଣ ପାଖଲୁଁ ଗନ୍ଧଷ୍ଣ ଏହା କହ କୃଷ୍ଣ ପାଶ । ୬୮ ।

ଅଥରଷ୍ଟେନୋଦ୍ଧୃତା ପଶୁପସୁଦୃଶୋ ଯାନ୍ତି ହପଦଂ

ବୃଣାବର୍ତ୍ତାକ୍ରାନ୍ତୋ ଋଚୟତି ଭବ୍ଦଂ ତଦ୍ୱଦସ୍ୟାଃ
ଅସୀବ୍ୟୋମୀଭୂତା ବ୍ରଜବସତି ଭୂରଘଶସ୍ୱର
ବହନ୍ତେ ସନ୍ତାପଂ ମୁରହର ହତ୍ୱାଢ଼ଂ ତ୍ୱୟି ଗତେ । ୨୯ ।
ହେ ହଂସ ମୋହନ ଅଗେ ଏ ବଚନ କହୁବ ତୁମ୍ଭେ ଗୋପରୁ ।
ହେଲାହଦନୁ ଦୂର ସକଳ ଅଙ୍ଗର ତୃଣାବର୍ତ୍ତିଆକ୍ରାନ୍ତରୁ ।
ହଷ୍ଟେ ବୟୂଙ୍କର ବ୍ରଜପଉସବ ବ୍ୟୋମମୟ ହୋଇଅଛୁ ।
ଏଣୁଂ ସନ୍ତାପ ବହୁଛନ୍ତି ସ୍ୱରୂପ ଏଥେଁ ସେଥ୍ୟାନ ହୁଂ କଛୁ । ୨୯ ।
ତ୍ୱଯ୍ୟାନାଗନ୍ତବ୍ୟଂ କଥମପି ହରେ ଗୋଷ୍ଠମଟନା
ଲତାଶ୍ରେଣୀବୃନ୍ଦାବନଭୁବ ଯତୋଽଭୂଦ୍ଦୁଷମୟୀ ।
ପ୍ରସୂନାନାଂ ଗନ୍ଧଂ ମଧୁମଥନ ତଦ୍ୱାତନିହତଂ
ଭଜନ୍ ସଦ୍ୟୋ ମୂର୍ଚ୍ଛାଂ ବହତି ନବହୋ ଗୋପସୁଦୃଶାଂ ।୨୦।
ହେ ହଂସ କହୁବ ନ ଫେରବେ ଜବ ଗୋପଭୁବନକୁ ହରି ।
ବୃନ୍ଦାବନସ୍ଥିତ ପୁଷ୍ପଲତାବ୍ରାତ ହେଲା ବିଷମୟସରି ।
ଅହେ ମଧୁଜିତପୁଷ୍ପଗନ୍ଧବ୍ରାତ ଯେବେ ଗୋପୀଙ୍କ ନାସାରେ ।
ମିଳନ୍ତେ ପବନ ହୋଇ ଜ୍ଞାନହୀନ ମଜ୍ଜନ୍ତି ସର୍ବେ ମୂର୍ଚ୍ଛାରେ । ୨୦ ।
କଥଂ ସଙ୍ଗୋଽସ୍ମାଭିଃ ସହ ସମୁଚିତଃ ସମ୍ପ୍ରତି ହରେ ।
ବୟଂ ଗ୍ରାମୀଣାର୍ଯ୍ୟାସ୍ତ୍ୱମସି ନୃପକନ୍ୟାର୍ଚ୍ଚିତପଦଃ ।
ଗତଃ କାଲୋ ଯସ୍ମିନ୍ ପଶୁପରମଣୀସଙ୍ଗମରୁଚେ
ଭବାନ୍ ବ ଗ୍ରସ୍ତସ୍ତ୍ରୈ ତମପି ଗୁଞ୍ଜବାର୍ତ୍ତୀ-ବହପିଞ୍ଚ । ୨୧ ।
କହୁବ ହେ ହଂସ ଅମ୍ଭେ ଗୋପୀବଣ କୃଷ୍ଣସଙ୍ଗଯୋଗ୍ୟ କାହୁଁ ।
ହୋଇବୁଁ ସେ ସ୍ୱଚ୍ଛସ୍ୱନଶ୍ରୀ- ସମାଜ ସେବାରେ ଅଛନ୍ତି ଯହୁଁ ।
ଅମ୍ଭେ ଗଉଡୁଣୀ ସେକାଳ ଗଲାଣି ଯେବେ କଣୀ ଅବକାରେ ।
ଗୋପୀଙ୍କ ଇଚ୍ଛେ ବହିଥିଲ ଲୁଚ ଗୁଞ୍ଜବାର୍ତ୍ତୀବୃକ୍ଷପରେ । ୨୧ ।
ବୟଂ ତ୍ୟକ୍ତ୍ୱା ସ୍ୱାମିନ୍ ଯଦହ ତବ ବଂ ଦୂଷଣମିଦଂ
ଜନସ୍ତାଂ ଷୀମାନାମସୁମଧିତସ୍ତାଂ ଦୁଷ୍ଟଉଦ୍ଧରଃ ।

କୁହୂକଣ୍ଠୈରଣ୍ୱୀବଶ୍ଚ ସହ ଜବାସାତ୍ ସଗଚ୍ଛତା ।
ବହୃଜ୍ୟନ୍ତେ ସଦ୍ୟଃ କଳିତନବପକ୍ଷୈର୍ବାଳଭୃତାଃ । ୭୨ ।

କହୁବ ତାହାଙ୍କ ସେ ଷଣ୍ଢ ଅମ୍ଭଙ୍କୁ ଯିବାର ତାଙ୍କର ଦୋଷ ।
କୋହେ ଲେଶମାତ୍ର ଅଛୁ ଯା ବଖ୍ୟାତ ଶୁଣ ତାହା ଅହେ ହଂସ ।
ତାଲିଅ ଜାଳର ଅଟେ ଏ ବେଭାର ନୁହନ୍ତି ସେ ତାର ବଶ ।
ତାର ପାଳେ ପିକ ଡିମ୍ବ ଦନ୍ଯସ ହେଲେ ସେ ଛଡ଼େ ତା-ପାଶ ।୭୨।

ଅସ୍ଯଂ ପୂର୍ବୋତ୍ତରଙ୍ଗାଃ ଖଲ ପଗନ୍ଦତୋ ଯସ୍ୟ ତବ ସା
ତସାଦାଖ୍ୟାତବ୍ୟଂ ପଗକଳଯୃ ତନ୍ମାତ୍ରକମିଦଂ ।
ମୟ୍ୟୃ ପ୍ରଷ୍ଟବ୍ୟୋଽସେ ପ୍ରଥମମିଦ ବୃନ୍ଦାବନପତେ
ରମାହୋ ରାଧେତ ସ୍ମରସି ହତ ଇଂ ବର୍ଣ୍ଣିଯୁଗଳଂ । ୭୩ ।

ପଗୃଗବ ହଂସ ଅହେ ହୃଷୀକେଶ ପୂର୍ବରଙ୍ଗକେଳିସ୍ଥାନ ।
ଯହିଁ ଗ୍ରସରସ ହେଲା ପରକାଶ ଅଚ୍ଛୁଟିକ ଭୁମ୍ଭମନ ।
ହେ ବୃନ୍ଦାଅରଣ୍ୟପତି ଶ୍ୟାମଧନ ପ୍ରଥମେଁ ଯା ପୁଚ୍ଛେଁ ଶୁଣ ।
ରାଧା ଏହୁ ବର୍ଣ୍ଣଦୁଇ ଭୁମ୍ଭମନ ମଧ୍ୟେ କି ହୋଏ ସ୍ମରଣ । ୭୩ ।

ଅପ୍ୟେ କୃଷ୍ଣଦ୍ରୋଣୀକୁହରଗୃହମେଧ୍ୱିନ୍ ବମଧୂନା
ପରୋକ୍ଷଂ ବକ୍ଷ୍ୟନ୍ତେ ପଶୁପରମଣୀଦୁର୍ନିସୃତଯଃ ।
ପ୍ରବୀଣା ଗୋପୀନାଂ ତବ ଚରଣପଦ୍ମେଽପି ଯଦସ୍ୟ
ଯଯୌ ରାଧା ସାଧାରଣ ସମୁଚିତପ୍ରଶ୍ନପଦବୀଂ । ୭୪ ।

କହୁବଟି ହଂସ ଅହେ କୁଞ୍ଜବାସ ଗୃହସ୍ଥ ବର୍ତ୍ତମାନରେ ।
ଆପଣଙ୍କ ହନେ ଗୋପନାରୀମାନେ ଅଛନ୍ତି ଯେଉଁ ପରରେ ।
ଦୁର୍ଭାଗ୍ୟ ମୁଁ କସ କହନ୍ତ ବଶେଷ ଗୋପୀଙ୍କ ମଧ୍ୟେ ଯେ ସାର ।
ସେ ରାଧା ଭୁମ୍ଭର ପାଦଚନ୍ଦ୍ରନର ହେଲାଣି ଯଥା ଇତର । ୭୪ ।

ମୟ୍ୟୃ ବାଚ୍ୟଃ କମ୍ପା ତ୍ୱମିହ ନଚ ଦୋଷାତ୍ ପରମସୌ
ଯଯୌ ମନ୍ଦା ବୃନ୍ଦାବନକୁସୁମବନ୍ଧୋ ବଧୂରତାଂ ।
ଯଦର୍ଥଂ ଦୁଃଖାର୍ତ୍ତ୍ୱ ବିକସତି ତମଦ୍ୟାପି ହୃଦୟ୍ୟ-

ନ ଯସ୍ମାଦ୍ଦୁର୍ମେଧା ନୟମପି ଭବନ୍ତଂ ବିଧୟିତା । ୭୫ ।
ହେ ଗୋଷ୍ଠପ୍ରଧାନ ଯେବେ ବୃନ୍ଦାବନ ପାସୋର ନ ଯିବ ଫେର ।
ଛଳପଣ ମୂର୍ତ୍ତି ଗୋପୀଙ୍କ ଜୀବନ କୃପାରେ ନ ନେବ ହର ।
ବୃନ୍ଦାବନ ସୁମ-ଗନ୍ଧେ ମନୋରମ ହୋଇଛନ୍ତି ଯେଉଁ ବାସର ।
ଦେଖି ତା ଶ୍ରୀମତୀ ଶୋକରେ କେମନ୍ତ ହରବେ ଦିବସ ବାର । ୭୫ ।

ତରଙ୍ଗୈଃ କୃଷ୍ଣାଂ ଶମନଭଗିନୀ ଲାଘବମସୌ
ନଦୀଂ କାଞ୍ଚିଦ୍ ଘୋଷେ ନୟନଜଲପୂରୈର୍ବିରଚୟ୍ୟ ।
ଇତ ବାସ୍ୟାଦ୍ଦ୍ୱେଷବଭ୍ରମତଦକ୍ଷାପ୍ରାର୍ଥନମପିଂ
ମୂରଚେ ବାଞ୍ଛନ୍ତୀଂ ବିଷମସୃତି ମାନୀ ତ ଶମନଃ । ୭୬ ।

ଶ୍ରୀମତୀ-ନୟନ ହୋଇ ଜଳେ ପୂର୍ଣ୍ଣ ଘୋଷେ ଜନ୍ମି ଏକ ନଦୀ ।
ତରଙ୍ଗବକ୍ଷରେ ଯମୁନାକୁ ହେଲେ ଜିଣିବାରୁ ହୋଇ ବାଦୀ ।
ଶମନଭଗିନୀ ଅଭିମାନ ଘେନ ହେ ହର ରାଧିକା-ପ୍ରାଣ ।
ନେବାକୁ ଅନେକ ଜଣାଇଲେ ବାକ୍ୟ ନାଁ ଶୁଣେ ସେ କଦାଚନ । ୭୬ ।

କୃତା କୁଞ୍ଜକ୍ରୀଡ଼ା କିମପି ତବ ରୂପଂ ମମ ସଖୀ
ସକୃଦ୍ଦୃଷ୍ଟ୍ୱା ଦୂରାଦହିତହିତବୋଧୋଜ୍ଝିତମତିଃ ।
ହତା ସେୟଂ ପ୍ରେମାନଳମନୁବିଶନ୍ତୀ ସରଭସଂ
ପତଙ୍ଗୀବାତ୍ମାନଂ ମୁରହର ମୁହୁର୍ଦାହିତବତୀ । ୭୭ ।

କୁରଙ୍ଗା-ପୀତବସନ ଯେ ଶ୍ରୀମତୀ ତୁମ୍ଭଙ୍କୁ କପଟ ଜାଣେ ।
ହିତ ବା ଅହିତ ବୋଧକୁ ରହିତମତି ହୋଇ ସେହିକ୍ଷଣେ ।
ଶୁଦ୍ଧ ଜୀବନର ଆଶା ହେ ଶ୍ରୀଧର ପତଙ୍ଗସ୍ୱଭାବକୁ ବହି ।
ପ୍ରେମ-ଅନଳରେ ପଶି ନିରନ୍ତରେ ଦଗ୍ଧ ହୋଏ ଦୁଃଖ ସହି । ୭୭ ।

ମୟି ଦୀତ୍ୟାଃ କମ୍ରା ତ୍ୱମିହ ଜନଦୋଷାପୂରମସୌ
ଅୟୋ ମନା ବୃନ୍ଦାବନକୁସୁମବନ୍ଧୋ ବିଧୁରତାଂ ।
ଯଦର୍ଥଂ ଦୁଃଖାଗ୍ନେ କିଁବିଧଭ ବିମଦ୍ୟାପି ହୃଦୟେ
ନ ଯସ୍ମାଦ୍ଦୁର୍ମେଧା ନୟମପି ଭବନ୍ତଂ ବିଧୟିତା । ୭୮ ।

ଅହେ ବୃନ୍ଦାବନବନୋଦୀ ମୋହନ ତୁମ୍ଭର ଏଥିରେ ଦୋଷ ।
ମୁଁ କହୁ ନ ପାରେଁ ସ୍ୱ ଅପରାଧରେ ଶ୍ରୀମତୀ ପାଉଛୁ କ୍ଲେଶ ।
ତୁମ୍ଭବିନା ତାର ହୃଦେ ଅନିବାର ବିରହଅନଳ ଜଳେ ।
ତେବେ ସେ ଦୁର୍ବୁଦ୍ଧିପଣେ ନିରବଧି ତୁମ୍ଭ ନାମକୁ ଯେ ଗଲେ । ୭୮ ।

ତ୍ୱିଦନ୍ତାର୍ଦ୍ଦୋ ଧନ୍ୟା ହୃଦୟମେବ ତେ ସ୍ୱଂ ପୁରମସୌ
ସମାହାଦ୍ୟ ସ୍ୱୈରଂ ଯଦତ ବଲସନ୍ତ୍ର ନିବସତି ।
ଧ୍ରୁବଂ ପୁଣ୍ୟଭ୍ରଂଶାଦଜନି ସରଳେୟଂ ମମ ସଖୀ
ପ୍ରବେଶସ୍ତତ୍ରାତ୍ତୁ କ୍ଷଣମପି ଯଦସ୍ୟା ନ ସୁଲଭଂ । ୭୯ ।

ସେ କୁବୁଜା ଧନ୍ୟ ଆପଣା ସଦନ ପ୍ରାପ୍ତ ମଣେ ତୁମ୍ଭ ଚିତ୍ତେ ।
ବାସ କରୁଅଛୁ କିବା ନ ପାଉଛୁ ଥିଲ ତା ସୁକୃତ କେତେ ।
ଆମ୍ଭ ସଖୀ ସ୍ୱଧା ଲଭି ପୁଣ୍ୟବାଧା ଜନଟିଥାନ୍ତେ ହେ ହରି ।
ତୁମ୍ଭ ସେ ମାନସ-ସଦନରେ ବାସ କ୍ଷଣେ ନ ପାରନ୍ତି କରି । ୭୯ ।

କମାବସ୍ଥା ଭୂର୍ତ୍ତେଃ ସପଦ ଯଦ ବା କ୍ରୂରଫଣିନୋ
ଷଡାପସ୍ମାରେଣ ଚ୍ୟୁତମଧିରଜସ୍ମାତ୍ ଜମପତତ୍ ।
ଇତ ବ୍ୟକ୍ତୈରସ୍ୟାଂ ଗୁରୁଭିରଭିତଃ ଶୀତକରବ-
ଶ୍ରବାଦସ୍ତନାଯ୍ୟାଂ ମୁରହର ଦ୍ଦକ୍ଷ୍ମା ବିଦଧିରେ । ୮୦ ।

କହିବ ଶ୍ରୀମତୀମୂର୍ଚ୍ଛା ଦେଖି ଭୀତ ଭଜ ଗୁରୁଜନମାନେ
ବିସ୍ମରନ୍ତି ଚତ୍ତ ଅସି କେଉଁ ଭୂତ ଲାଗିଲ ଏହାକୁ ସବେ ।
ଅଥବା ଅକୂର ଭାତରସଧର ଦଂଶିଲାକି ଅପସ୍ମାର ।
ସେପରି ଶୀତକରର ଶୁଣି ହର ଲଭନ୍ତେ ହେ ମୁରହର ।୮୦।

ଜଗାଦେନ୍ଦ୍ରଂ ସମ୍ଯ୍ରତ୍ୟକ୍ଷଲପଶ୍ୱପାକଲଦସ୍ୱି
ନଶ୍ୱନର୍ତ୍ତି ସ୍ୱୈରଂ ମମ ସହଚଶ୍ୱାଚନ୍ତ୍ରକୁହରେ ।
ଉପେନ୍ଦ୍ରଶ୍ରେଣୀମଧୂର ମଥୁଖୃତ୍ୟାଂ ଜନସଭ-
କ୍ଷିପଦାର୍ତ୍ତା ବାର୍ତ୍ତାମପି ତବ ଯଦେଷା ନ ଲଭତେ । ୮୧ ।

କହିବ ହେ ହଂସ ଶ୍ରୀମତୀମାନସକୁହରମଧ୍ୟେ ନୂତନ ।

ଅମଙ୍ଗଳପରୂପାତର ଲହଶ୍ରି ନୃତ୍ୟ କରେ ଅବଚ୍ଛିନ୍ନ ।
ସେ ସବନସ୍ତନ ଶ୍ରେଣୀର ବନ୍ଦନ ମଧୁପୁର ଗନ୍ଧବନ୍ତୁ ।
ବାରତା ଭୁମ୍ଭଙ୍କ ନ ପାଇ କାତର ହେବାରୁ ସଦା ସୁତନୁ । ୮୧ ।

ଛଳାତ୍ ସିଦ୍ଧାଦେଶାତ୍ ନମତ ଭଜତେ ମାନ୍ତ୍ରିକଗଣାନ୍
ଦଧତ୍ୱେ ଶୁଶ୍ରୂଷାମଧ୍ୱକଦନସ୍ୟୈନୌଶଃକଦାଂ ।
ଉଦାସୀନାଶ୍ଚାପ୍ୟୈ ପରତରବଧ ବକ୍ତ୍ରା ଗିରସ୍ତାଂ
ମନୀଷା ହ୍ୟ ବ୍ୟଗ୍ରା କମପି ଶୁଭହେତୁଂ ନ ମନୁତେ । ୮୨

ହେ ହଂସ କହୁବ ଶ୍ରୀମତୀ ଯେ ଭୁମ୍ଭ-ପ୍ରାପ୍ତି ଇଚ୍ଛା ଧରି ମନେ ।
ତେବେ ଉଦାସୀନମାନଙ୍କୁ ପ୍ରଣାମ କରି ଯେ ମାନ୍ତ୍ରିକଗଣେ ।
ସେବା କରେ ପୁଣି ଜନ୍ମଭୂଷ୍ଟି କ୍ଷାନଜନେ ଲକ୍ଷ ଦେଖିବାକୁ ।
ଭୁମ୍ଭଙ୍କୁ ପାଇବାଶ ସେବେ କାହିଁ ମତ ନ ଲହେ ସୁଖହେତୁକୁ । ୮୨ ।

ପଶୂନାଂ ପାତାରଂ ଭୁଜଗରପୁପଦ୍ମପ୍ରଣୟିନଂ
ସ୍ୱସୈନ୍ଦର୍ଯ୍ୟକ୍ରୀଡ଼ଂ ନବଭଜନସାର-ଦ୍ୟୁତିଧରଂ ।
ସଦାଧ୍ୟଣ୍ଡେ ନନ୍ଦୀଶ୍ୱରଗିରଭୁବୋ ରଙ୍ଗରସିକଂ
ଭବନ୍ତଂ ହଂସାରେ ଵନଶ ଉଵଦାପ୍ତ୍ରୈ ମମ ସଖୀ । ୮୩ ।

ପଶୁଙ୍କ ପାଳକ ଗରୁଡ଼ନାସ୍ତକ କାମକ୍ରୀଡ଼ା ବବର୍ଦ୍ଧକ ।
ନବଘନ ଶ୍ୟାମଳ ବାରିବାହକୁଳ ସୁଷମାଛଟାହାରକ ।
ନନ୍ଦୀଶ୍ୱରଗିରି ନିକଟବିହାରି ଭୁମ୍ଭଙ୍କୁ ଅମ୍ଭର ସଖୀ ।
ଲକୁଣ୍ଡି ଅପଣଙ୍କର ଦରଶନ ପାଇବାକୁ ଆଶା ରଖି । ୮୩ ।

ଭବନ୍ତଂ ସନ୍ତପ୍ତା କଦଳିତତମାଲାଙ୍କୁରରସୈ
ର୍ବିଲୟ୍ୟ ଭ୍ରୂଭଙ୍ଗୀକୃତମଦନକୋଦଣ୍ଡକଦନଂ ।
ନଧାସ୍ୟନ୍ତୀ କଣ୍ଠେ ତବ ନଜଭୁଜା ବଲ୍ଲକମସୌ
ଧରଣ୍ୟାମୂନ୍ଦୀଲକ୍ଷ୍ଣଡମନନ୍ଦଡ଼ାଙ୍ଗୀ ବିଲୁଠତି । ୮୪ ।

ସନ୍ତାପିତ ହୋଇ ରାଧା ଚନ୍ଦ୍ରମୁହିଁ ତମାଳପତ୍ରରସରେ ।
ଲେଖି ଭୁମ୍ଭରୂପ ଫୁଲଧନୁଷ୍ଟପଞ୍ଜତ ଭ୍ରୂଭଙ୍ଗୀଠାଣରେ ।

ସେହୁରୂପ ବର୍ତ୍ତେ ହଳବାହୁ ଅଙ୍ଗେ ଉଚ୍ଚ ଅଲଙ୍ଗନସୁଖ ।
ପାଇବା ଆଶାରେ ସଙ୍କେ ଅବନୀରେ ଅବଶରେ ଲଭ ଦୁଃଖ ।୮୪।
କଦାଚନ୍ଦ୍ରୋଦ୍ଦେଶ୍ୟଂ ନବଜଳଭବଶ୍ୟାମସ୍ପୃହାମଦା-
ଦମନ୍ଦାଦାମ୍ନାନଂ ଚଳସ୍ୟତି ବବନ୍ତଂ ମମ ସଖୀ ।
ତଥାପ୍ୟେଷା ସ୍ୱଧା ବରଦବଦନାକଳ୍ପିତଧିୟୋ
ମୃଷୈବ ଦୁଃସାଧା କ୍ଷଣମପି ନ ବାଧା ବିରମତି । ୮୫ ।
ସ୍ୱଧା ମୂଢ଼ମତି ହୋଇ ଦବାସ୍ୱତ ତୁମ୍ଭ ଧ୍ୟାନ-ଭାବନାରେ ।
କେବେଟି ଚଞ୍ଚଳ ହୋଇ ଜଳବାଳ ମୁଁ ବୋଲି ଭାବେ ମନରେ ।
ସନ୍ତତ ବିରହଅନଳରେ ଦାହ ହୁଅନ୍ତେ ତୁମ୍ଭଙ୍କୁ ବିନ୍ତ ।
ଆମ୍ଭ ସଖୀ ବାଧା ଲଭୁଅଛି ସଦା ଶୁଣ ହେ ମୃଗଅଗ୍ରଜ । ୮୫ ।
ବ୍ୟଥୀ ସନ୍ତାପାନାମ୍ପରି ପରିମୁକ୍ତାପି ରଭସା-
ଦଦାମାମାପେଦେ ତଦପି ତବ ଚେଷ୍ଟାଂ ପ୍ରିୟସଖୀ ।
ଯଦେଷା ହଂସାରେ ଉଦୂରହୃଦନ୍ତଂ ଗ୍ଧା ମବସ୍ୟତି
ଖଗାନାଂ ମୂର୍ଦ୍ଧନ୍ୟା ଉଦୂରହୃଦୟାତ୍ତ୍ୱଦନୁଦନଂ । ୮୬ ।
ତୁମ୍ଭେ ଶ୍ରୀମତୀଙ୍କି ସନ୍ତାପତାତଵ ଦେଇଅଛ ତଥାପି ସେ ।
ବଳିତମାନରେ ଭଜେ ଏକାନ୍ତରେ ତୁମ୍ଭ ନାମକୁ ମାନସେ ।
ଖଗଶିରୋମଣି ଏବେ ଶୁଣି ଜାଣି ବକ୍ରହୃଦୟ ତୁମ୍ଭଙ୍କୁ ।
କ୍ରମଶରେ କ୍ଷୀଣ ହୋଇ ଦନୁଦନ ଲଭୁଅଛି କୃଶତାକୁ । ୮୬ ।
ସମକ୍ଷଂ ସର୍ବେଷାଂ ବିହରସି ସମାଧିପ୍ରଣୟିନା-
ମିତି ଶ୍ରୁତ୍ୱା ନୂନଂ ସୁରୁଚିରସମାଧିଂ କଲୟତି ।
ତଦା ହଂସାସ୍ତରେ ଭବତ ଯମିନାଂ ନେତ୍ରପଦବୀ-
ମିବ ବ୍ୟକ୍ତଂ ସଙ୍ଗିଭବତି ଯମମାଲ୍ଲୋଚଭୂମପି । ୮୭ ।
ସମାଧିସାଧନକାରୀ ସର୍ବଜନମାନଙ୍କୁ ଯେ ଦଅ ଦେଖା ।
ଜାଣି ଏହୁ ଗୁଡ଼ ଗାଢ଼ତପେ ମତ ବଳାଇଅଛି ସ୍ୱଧିକା ।
ହେ ହଂସନାଶନ ତୁମ୍ଭଙ୍କୁ ଯେ ଜନ ଭଜେ ସେ ଦେଖଇ କେତେ ।

ଏହା ଜାଣି ସୁଧା ବଚନରେ ଶୁଦ୍ଧା କଳାଇଅଛୁ ସନ୍ତୁଷ୍ଟେ । ୮୭ ।

ନମସ୍ତେ କାଳିନ୍ଦୀସଲିଳଦଳଦିନ୍ଦୀବରରୁଚେ
ମୁକୁନ୍ଦ ଶ୍ରୀ ବୃନ୍ଦାବନମଦନ ବୃନ୍ଦାରକମଣେ ।
ବ୍ରଜାନନ୍ଦସ୍ୟନ୍ଦୀନ୍ଦୁଚରଦସ୍ମିତ ନନ୍ଦାମୃତ ହରେ
ସଦେହ କ୍ରନ୍ଦନ୍ତୀ ପଦକମଳଶୂନ୍ୟଂ କଳଲସୃଜ । ୮୮ ।

ହେ ମୁରନାଶନ ଯମୁନାଜୀବନଜାତ ଇନ୍ଦୀବରକାନ୍ତି ।
ହେଁ ମୁକୁନ୍ଦପ୍ରଦ ବୃନ୍ଦାବନ-ମୋହନ ଦେବବର୍ଗଙ୍କ ରତ୍ନପତି ।
ଇନ୍ଦ୍ରମଣିରୂପ ବ୍ରଜାନନ୍ଦ ରୂପ ନନ୍ଦସୁତ ହରିପ୍ରିୟ ।
ଏପରି କାନ୍ଦନ୍ତି ରାଧା ହେବାସହ ସଙ୍ଗେ ଯେହ ସଖୀତସୁ । ୮୮ ।

ସମନ୍ତାଦୁତ୍ତପ୍ତସ୍ତବକରହଦବାଗ୍ନିଶିଖୟା
କୃତୋଦ୍ଦେଶଃ ପକ୍ଷାଶୁଗମୃଗୟୁବେଧବ୍ୟତିକରୈଃ ।
ଚନ୍ଦ୍ରଭୂତଃ ସନ୍ଧ୍ୟସ୍ତନ୍ବକନ୍ଦିଂ ହାସ୍ୟଛ ହରେ
ହଠାଦଦ୍ୟଶ୍ୱୋ ବା ମମ ସହଚରୀ ପ୍ରାଣହରଣଃ । ୮୯ ।

ତୁମ୍ଭର ବିରହ ଅଗ୍ନିଶିଖାରସୁ ତାପେ ସନ୍ତାପିତ ହୋଇ ।
ମଦନବ୍ୟାଧର ପାଇ ଶରଘାତ ଚଞ୍ଚଳତ ହୋଇଛନ୍ତି ।
ହୋଇ ଅତି କ୍ଷୀଣ ଶ୍ରୀମତୀର ପ୍ରାଣ ହରିଣ ଶରୀର-ବନ ।
ଛାଡ଼ି ପଳାଇବ ଶୀଘ୍ର ହେ ମାଧବ ବଶ୍ଚିତ ଏହା ମନ । ୮୯ ।

ପୟୋରାଶେସ୍ତୀରେ ସ୍ଫୁରତି ହମକତ୍ରେଷ୍ଟ୍ୱଂ ସମଧୁରେ
ଦଧାନେ ଦୃଗ୍‌ଭଙ୍ଗ୍ୟା ମୁରହରଯଶିରୂପଂ ମମ ସଖୀ ।
ହରେ ଦତ୍ତସ୍ୱାନ୍ତା ଭବତି ଭବଦୀୟାଂ ଶ୍ଚ ପ୍ରଭବତି
ମୁଖେ ହନ୍ତୁଂ ତନ୍ତୁ ବ୍ୟଥୟତି ତବାନେକ ଭ୍ରୁକୁଟୀ । ୯୦ ।

ସମୁଦ୍ରର ତୀର ଫେନପରିବାର ହିମସୁନ୍ଦର ବର୍ଣ୍ଣି ।
ଶ୍ୟାମ ସୁନ୍ଦର ଭ୍ରୂଭଙ୍ଗୀରେ ଯାର ପରାସ୍ତ ହେଲା ମଦନ ।
ସେ ହରଙ୍କୁ ହେବା ରଜନୀରେ ସେବା କରୁଛି ସଖୀ ସନ୍ତତ ।
କୋହ୍ଲଲେଷ୍ଟ ବାମ ଭୂମେ ତବା ତାମ କରନ୍ତା ତାଙ୍କୁ ବ୍ୟଥିତ । ୯୦ ।

ନ ଜାନୀଷେ ଭାବ ପଶୁପରମଣୀନାଂ ଯଦୁମଣେ
ନ ଜାନୀମଃ କସ୍ମାତ୍ତଦପି ତବ ମାୟା ରଚୟତି ।
ସମନ୍ତାଦଧ୍ୟାସ୍ତଂ ଯଦହ ଯଦନବ୍ୟାଧିରଲସ·
ଦ୍ଵିଜାଦସ୍ୟାସ୍ତେନ ବ୍ୟସନକୁଳମେବ ଦ୍ଵିଗୁଣିତଂ । ୯୧ ।

ଅହେ ଯଦୁମଣି ଏ ଗୋପରମଣୀମାନଙ୍କର ଭାବ ତୁମ୍ଭେ ।
ନ ଜାଣିଲେ ଅମ୍ଭମାନଙ୍କୁ ମୂରୁଚ ମାୟା ନେଇ ତୁମ୍ଭ ଭାବେ ।
କରଅଛନ୍ତି ସ୍ନେହୀ ବାତଶ୍ଳେଷୀ କହୁଥିଲାଦନ୍ତ ବ୍ରହ୍ମଜ୍ଞାନ ।
ରାଧା ଦୁଃଖନଦୀ ପାଇଅଛନ୍ତି ବୃଦ୍ଧି ଦ୍ଵିଗୁଣରେ ନୋହେ ଥାନ । ୯୧

ଗୁରୁସ୍ତବନ୍ତେବାସୀ ସ ଭଜତି ଯଦୂନାଂ ସଚିବତାଂ
ସଖୀୟଂ କାଳିନ୍ଦୀ କ୍ଵଚ ଭବତି କାଳସ୍ୟ ଭଗିନୀ ।
ଭବେଦନ୍ୟଃ କୋବା ନରପତିପୁରେ ମତ୍ପରିଚିତୋ
ଦଶାମସ୍ୟାଃ ଶଂସନ୍ ଯଦୁତିଲକ ଯସ୍ତ୍ଵାଂ ମନୂନୟେତ୍ ।୯୨।

ଶିଷ୍ୟ ଯେ ଉଦ୍ଧବ ସେହୁତ ସଚିବ ଯଦୁବଂଶମାନଙ୍କର ।
ଯମର ଭଉଣୀ ଯମୁନାତ ପୁଣି ଦଶ୍ୟ କେ ଯଦୁବୀର ।
ମଧୁପୁରେ ଅମ୍ଭ ପରିଚିତ ତୁମ୍ଭ ବିନା ଥାଉ କେବା ଅଛି ।
ଅମ୍ଭ ଦୁଃଖ କହୁ ତୁମ୍ଭଙ୍କୁ ସେନେହୀ କରାଇବା ନ ଦିଶୁଛି ।୯୨।

ଵିଶୀର୍ଣ୍ଣାଙ୍ଗୀମନ୍ତର୍ବଣକଲୁଠନାଦୁତ୍କଳକସ୍ୟା
ପସ୍ଵାତାଂ ଭୂୟସ୍ୟ ସତତମପରାଗବ୍ୟଞ୍ଜକସ୍ୟଂ ।
ପରାଧ୍ୱସ୍ତାମୋଦାଂ ବରମିତସମସ୍ତାଳକୁତୁକାଂ
ବଧୋ ପାଦସ୍ପର୍ଶାଦପି ସୁଖୟ ରାଧା ତୁମୁଦନାଂ । ୯୩ ।

ତୁମ୍ଭ ବିଚ୍ଛେଦରେ ନାନା କାନନରେ ବୁଲି ବୁଲି କ୍ଷୀଣ ହୋଇ ।
ଅଛି ପୁଣି ସେହି ଉତ୍କଣ୍ଠାକୁ ପାଇ ଶୋଭା ଅଙ୍ଗେ ରଖିନାହିଁ ।
ଆମୋଦକୁ ପରିହରି ସହଚରୀ କଉତୁକ ନ ଶୁଣଇ ।
ରାଧା ତୁମ୍ଭଦ ଚରଣ ପ୍ରମୋଦ ଦଅ ତୁମ୍ଭେ ବଧୂହୋଇ ।୯୩।

ବ୍ୟପତ୍ତିଭ୍ୟଃ ପ୍ରାଣାନ୍ କଥମପି ବବତ୍ସ ସଙ୍ଗମସୁଖ-

ତ୍ୱଦାଧୀନା ଶୌରେ ମମ ସହଚରୀ ରଙ୍ଗଭବନୀ ।
ଅତିକ୍ରାନ୍ତେ ସମ୍ପ୍ରତ୍ୟବଧି ଦିବସେ ଜୀବନବିଧୌ ।
ହତାଶା ନିଃଶଙ୍କଂ ବିତରତି ଦୃଶୌ ତନ୍ଦ୍ର ମୁକୁଲେ । ୧୪
ତୁମ୍ଭ ସଙ୍ଗସୁଖ ଆଶ ରେଖି ଦୁଃଖମାନଙ୍କରୁ ପ୍ରାଣ ରଖି ।
ଥିଲା ରାଧା ଯେବେ ଦେବକୀନନ୍ଦନ ବୃନ୍ଦାବନ ଯିବା ଦେଖି ।
ହୋଇ ସେ ହତାଶ ଜୀବନର ଆଶ ଛାଡ଼ି ଦେଇ ନିଃଶଙ୍କରେ ।
ମୁକୁଳି ଅଛି ନେତ୍ରଦୁଇ ଏତେଦିନ କହିବ ହଂସ କୃଷ୍ଣରେ । ୧୪ ।
ପ୍ରଣୀତାସ୍ତସ୍ମିନ୍ନମ୍ବୁଭରୁଦଂପୂରଣଚେ-
ବିମ୍ବ କ୍ରାନ୍ତ୍ୟା ବ୍ୟକ୍ତସ୍ଫୁରଦଦନଚ୍ଛଳଃ ପଶୁପତୈଃ ।
ଅମୁଞ୍ଚନ୍ତୀ ସଙ୍ଗଂ କୁବଲୟଦୃଶଃ କେବଲମସୌ
ବଲାଦାଦ୍ୟପ୍ରାଣାନବତି ଭବଦାଶା ସହଚରୀ । ୧୫ ।
ସଖୀମାନେ ପ୍ରତିକାରରୁ ନିବର୍ତ୍ତି ରହିଲେଣି ଶ୍ରୀମତୀର ।
ଚରମ ଅବସ୍ଥା ଦେଖି ମଣି ବୃଥା ଜୀବନରକ୍ଷାରେ ତାର ।
ନୀଳ ଉତପଳ-ନେତ୍ରାର କେବଳ ତୁମ୍ଭ ସଙ୍ଗ ଆଶା ଚିତ୍ତେ ।
ଥିବାରୁ ପରାଣ ରହିଅଛି ଜାଣ ସନ୍ଦେହ ନ ଧର ଏଥେ । ୧୫ ।
ଅୟେ ସ୍ୱସକ୍ରୀଡ଼ାରସିକ ମମ ସଖ୍ୟାଂ ନବନବା
ପୁରା ବଦ୍ଧା ଯେନ ପ୍ରଣୟଲହରୀ ହନ୍ତ ଗହନା ।
ସଚେନ୍ମୁକ୍ତାପେକ୍ଷସ୍ତ୍ୱମପି ଧିଗିମାଂ ତୂଳଶକଲଂ
ଯଦେତସ୍ୟା ନାସାବହିତମିଦମଦ୍ୟାପି ଚଲତି । ୧୬ ।
ହେ ସ୍ୱସରସିକ ଭାବ ଯେ ଅଶେଷ ନୂତନ ନୂତନ ଦେଇ ।
ପୂର୍ବେ ବୃନ୍ଦାବନେ ପ୍ରଣୟବନ୍ଧନେ ବାନ୍ଧିଲ ସ୍ୱଢଙ୍କୁ ନେଇ ।
ଏବେ ସେହି ସ୍ନେହ ଶୃଙ୍ଖଳତ ବହ ସ୍ୱଧବା-ନାସାପବନେ ।
ତୂଳା ଯା ହଲୁଛି ଏହିଁ ମୁଁ ବୋଲୁଛି ଧିକ ଧିକ ତା ଜୀବନେ ୧୬
ମୁକୁନ୍ଦ ଭ୍ରାନ୍ତ୍ୟାସୀ ତମପି ଯଦସଙ୍କଳ୍ପିତଶତଂ
ବିଧତ୍ତେ ତଦ୍ଭକ୍ତ୍ୟା ଜଗଦ ମନୁଜୈଃ ବଃ ପ୍ରକଟିତ ।

ତଦାଲୁଞ୍ଚ ତଳିର୍ଣ୍ଣୀ ହଳପଦ ଯଦୁକ୍ଳିଷ୍ଟରମତ-
ସ୍ତୁଦାଶ୍ୟାମେ ସ୍ୱାମିନ୍ ଯମସ୍ୟ ମତରେବ୍ରଂସପଦବୀଂ ॥ ୯୬

ହେ ମୁକୁନ୍ଦ ସବୁ କେତୁ ବ୍ରଜ ରହୁ ପ୍ରଳାପ କରନ୍ତି ଯେତେ ।
ଜଗତରେ ଜନ ଜେ ଅଛୁ ସେମାନ ବର୍ଣ୍ଣିପାରିବ କା ସତେ ।
କଲ୍ୟାଣୀ ସେ ସୁଧା ଉକ୍ତି ଗୁଡ଼ିକ ବାଧା କଷେ ଯାହା ଯାହା ଭଣେ ।
କହୁଛ ତା ତୁମ୍ଭେ କୃଷ୍ଣକର୍ଣ୍ଣେ ଯେବେ କହ ହଂସ ଶୁଭକ୍ଷଣେ ।୯୭

ଅକୃତ୍ରୋଽପି ପ୍ରେମା ମଧ୍ୟେ ମୁଦିତଯୋର୍ଯଃ ସଖି ପୁରା
ପରଂ ଧର୍ମ୍ୟାପେକ୍ଷାମପି ତଦବଲମ୍ବ୍ୟଗଣସ୍ୟେତ୍ ।
ତଥେଦାନୀଂ ହା ଧିକ୍ ସମଜନି ତଟସ୍ଥଃ ଛୁଟମଦଂ
ବଚେ ଲଜ୍ଜାଂ ଯେନ କ୍ଷଣମପି ପୁନର୍ଜୀବିତୁମପି । ୯୮ ।

ଶ୍ୟାମ ବଥନ ଲଳିତେ ମୋହନ ପୂର୍ବେ ମୋତେ ଯେଉଁ ପ୍ରେମ ।
କରୁଥିଲେ ତହିଁ ନହି ଯୁଣୀ ହୋଇଥିଲି ଏବେ ସେହୁ ଶ୍ୟାମ ।
ସେ ପୀରତିରୁ ଉପାଡ଼ ମୂଳରୁ ହଥନ୍ତି ମୋର ପରାଣ ।
କ୍ଷଣେ ହେଲେ ରହିବାକୁ ଲଜ୍ଜା ହୋଇଅଛି ମୋ ମାନସେ ଜାଣ ॥

ଗମ୍ଭୀର୍ଯ୍ୟାନ୍ନେ ପ୍ରେମା ତ୍ୱୟି ପରିଚିତସ୍ନେହଲଘୁତା
ନ ଜାତୁଷ୍ୟାମୀତ୍ ପ୍ରଣୟଗୁରୁରମଣ୍ୟାପନବଶଃ ।
କଥଂ ଜାୟ୍ୟାସୀତ ସୁକୃଣପରପାଷ୍ଠୀପ୍ରକଟନଂ
ହରୌ ସନ୍ଦେଶାୟୁ ପ୍ରିୟସଖି ନ ମେ ବାଗବସରଃ । ୯୯ ।

ହେ ଲଳିତେ କସ ଦେବଟି ସନ୍ଦେଶ କୃଷ୍ଣଙ୍କୁ କହିବାପାଇଁ ।
ଗାଢ଼ ପ୍ରେମ ଅଛି କହିଲେ ମଣୁଛି ସ୍ନେହ ଯିବ ଲଘୁ ହୋଇ ।
ତୁମ୍ଭ ହନା ଜାଲ ରହୁ ନ ପାରଇ ଭାଷିଲେ ଉଣା ପୀରତି ।
ହେବ ତହିଁ ଫେର ନ ଅପ ଏପରି କହିଁ ହେବ ପ୍ରେମକ୍ଷ୍ୟାତି ॥

ଅମୀ ଦୁଷ୍ଟାଃ ଦ୍ରୁବ୍ୟଂ ଅମଲଦଧ୍ୱରେ ତ ମପି ନୂତଂ
ହ୍ରୀମାଣୀତ୍ୱଂ ତେତଃ ସଖି ନ ତଢଣୋ ନନ୍ଦତନୟ ।
ଘଦାବାଲୀଂ ପଣ୍ଡୈତେ ଯୁଗପଦୁପତାପଂ ହୃଦୟତେ

ପ୍ରଭୌ ମୁକ୍ତାପେକ୍ଷେ ଭଜଇ ନନ୍ଦୁ ବୋ ବା ଜନୁଷଭାଂ ।୯୦
ବୃକ୍ଷ ଥିଲା ଯବେ ଏହି କୁଞ୍ଜମାନେ କେଡ଼େ ମୋଦ ବହୁଥିଲେ ।
ବୃକ୍ଷମାନେ ତତ୍ର ଅନନପ୍ରୀତ କେତେ ବା କରୁ ନ ଥିଲେ ।
ଏବେ ସଖି ଦେଖ ସେହି କୁଞ୍ଜ ବୃକ୍ଷ ମାନଙ୍କେ ତାପ ବଢ଼ାନ୍ତି ।
ପ୍ରଭୁ ବାମ ହେଲେ ତା ଦେଖି ସକଳେ ଦୁଃସ୍ୱଭାବ ଭଜନ୍ତି ।୧୦୦।

ସମାପ୍ତ ।



---

*Ptd by N N Sahoo Arunodoy Press Cuttack*